ନେହେରୁ ବାଳ ପୁସ୍ତକାଳୟ

# ଜଙ୍ଗଲରେ କେତୋଟି ଦିନ ଗୋଟିଏ ରାତି

ଇ. ଆର. ସି. ଦାବେଦାର

ଅନୁବାଦ

ଡ. ସୌଭାଗ୍ୟ କୁମାର ମିଶ୍ର

ଚିତ୍ର

ଶେଖର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

1985 (*Saka* 1907)






ADVENTURES OF A WILDLIFE WARDEN (Oriya)

PUBLISHED BY THE DIRECTOR, NATIONAL BOOK TRUST, INDIA, A-5, GREEN PARK, NEW DELHI-110016 AND PRINTED AT JANTY PRINTING WORKS, JAMA MASJID, DELHI-110006

ନେହେରୁ ବାଳ ପୁସ୍ତକାଳୟ

# ଜଙ୍ଗଲରେ କେତୋଟି ଦିନ ଗୋଟିଏ ରାତି

ଇ. ଆର. ସି. ଦାବେଦାର
ଅନୁବାଦ
ଡ. ସୌଭାଗ୍ୟ କୁମାର ମିଶ୍ର
ଚିତ୍ର
ଶେଖର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଚୋରା ଶିକାରୀମାନେ କେମିତି ଧରା ପଡିଲେ

ଏକ ଉଚ୍ଚ ପର୍ବତମାଳାର ପାଦ ଦେଶରେ ଲମ୍ବି ଯାଇଛି, କୁକଲ୍ ଅଭୟାରଣ୍ୟ । ଗୋଟାଏ ବଡ ପର୍ବତର ଢାଲୁ ଅଞ୍ଚଳ, କେତେଟା ଛୋଟ ଛୋଟ ପାହାଡ ଏବଂ ଅଳ୍ପ କିଛି ସମତଳ ଜମି—ଏ ସବୁକୁ ନେଇ ଅଭୟାରଣ୍ୟଟା ଗଢା ହୋଇଛି । ପୂରା ଅଞ୍ଚଳଟା ଘଞ୍ଚ ଜଙ୍ଗଲରେ ପୂର୍ଣ୍ଣ । ଅନେକ ରକମର ବନ୍ୟ ଜନ୍ତୁ ସେଥିରେ ଲୁଚି ଛପି ଚଳପ୍ରଚଳ ହେଉଥାନ୍ତି । କୁକଲ୍ ବର୍ଷସାରା ଶାଗୁଆ ରହିଥାଏ, ଅନ୍ଧାରୁଆ ଓ ଥଣ୍ଡା ଲାଗେ । କେବଳ ଖରା ଦିନେ ଗରମ ଓ ଶୁଖିଲା ହୋଇଯାଏ । କେତେ ବର୍ଷ ପରେ କୁକଲ୍ ଖୁବ୍ ଗରମ ଓ ଶୁଖିଲା ହୋଇଗଲା । ସେ ବର୍ଷ ଅନେକ ଦିନ ଧରି ଭୀଷଣ ଖରା ହେଲା, ଚାରିଆଡର ପାଣି ଶୁଖିଗଲା । କେବଳ କୁକଲ୍ ରେ ନୁହେଁ, ଆଖ ପାଖ ଅଞ୍ଚଳରେ ମଧ୍ୟ । ଆଗରୁ କେବେ ଏମିତି ଖରାପ ଅବସ୍ଥା ସୃଷ୍ଟି ହୋଇ ନ ଥିଲା ।

ନେଲ୍ଲି ଓଡାଇ ବୋଲି ବଣୁଆ ନଈଟିଏ ଅଭୟାରଣ୍ୟ ଭିତର ଦେଇ ବହି ଯାଉଥାଏ । ନଈଟି ମଧ୍ୟ ପୂରା ଶୁଖିଗଲା । ଆଗରୁ ଏମିତି ଘଟଣା କେବେ ଘଟିଥିବା କଥା ଲୋକେ ମନେ ପକାଇ ପାରିଲେ ନାହିଁ । ନଈର ଏଠି ସେଠି ଛୋଟ ଛୋଟ ଖାଲ ଓ ଚୂଆରେ ଟିକିଏ ଟିକିଏ ପାଣି ଥାଏ । କିନ୍ତୁ ଏଗୁଡିକ ମଧ୍ୟ ଖୁବ୍ ଶୀଘ୍ର ଗୋଟିକ ପରେ ଗୋଟିଏ ଶୁଖିବାକୁ ଲାଗିଲେ । ଶେଷକୁ ଏମିତି ହେଲା ଯେ ମାତ୍ର ଯୋଡିଏ ଚୂଆରେ ଅଳ୍ପ କିଛି ପାଣି ରହିଲା । ଅଭୟାରଣ୍ୟରେ ଯେଉଁ ଆଦିବାସୀ ହରିଜନମାନେ ରହୁଥିଲେ ସେମାନେ ଶୁଖି ଆସୁଥିବା ନଈରୁ ଖୁବ୍ ସହଜରେ ମାଛତକ ମାରି ଖାଇଗଲେ । ଖାଇ ଦେଲେ ସିନା, ସମସ୍ତେ ଡରିଗଲେ । ସେମାନେ

---

ଅଭୟାରଣ୍ୟ : ବନ୍ୟ ଜନ୍ତୁମାନଙ୍କର ସଂଖ୍ୟା କମିଯାଇଥିବା ଯୋଗୁଁ ଆମ ସରକାର କେତେକ ଜଙ୍ଗଲକୁ ଅଭୟାରଣ୍ୟ ବୋଲି ଘୋଷଣା କରିଛନ୍ତି । ସେଠାରେ ବନ୍ୟ ଜନ୍ତୁମାନଙ୍କର ଜୀବନ ରକ୍ଷା ପାଇଁ ସବୁପ୍ରକାର ଯତ୍ନ ନିଆ ଯାଉଥାଏ ।

ଜାଣି ପାରିଲେ ଯେ ପର ବର୍ଷ ନଈରୁ ଆଉ ସେମିତି କିଛି ମାଛ ମିଳିବ ନାହିଁ ।

ଅବଶ୍ୟ ପାଣି କେବଳ ବଲୁଆ ନଈଟିରୁ ମିଳୁ ନ ଥିଲା । ଏଠି ସେଠି ଅନେକ ଗୁଡିଏ ଛୋଟ ଛୋଟ ଗଡ଼ିଆ ଥିଲା । ପାଣି ଝରି ସେଗୁଡିକରେ ଜମି ରହିଥାଏ । ଏଗୁଡିକ ମଧ୍ୟ ଗୋଟିକ ପରେ ଗୋଟିଏ ଶୁଖିବାରେ ଲାଗିଲେ । କେବଳ ସବୁଠୁ ବଡ, ସବୁଠୁ ଗହୀରିଆ ଗଡିଆଟିରେ କିଛି ପାଣି ଥାଏ । ଗଡିଆଟିର ନାଁ, ଶେନ୍ ବାଗା ଉରୁନି ।

କୁକଲ୍‌ରେ ଏମିତି ଜଳକଷ୍ଟ କାହିଁକି ପଡିଲା ଜାଣିବାକୁ ଲୋକଙ୍କର ବିଶେଷ ଅସୁବିଧା ହେଲା ନାହିଁ । କାଠ ଦାମ୍ ବଢି ଯାଇଥିବା ଦେଖି ପର୍ବତ ଉପର ଅଞ୍ଚଳରେ ରହୁଥିବା ଜମି ମାଲିକମାନେ ତାଙ୍କ ଜମିରେ ଥିବା ଗଛ-ଗୁଡାକ କାଟି ପକାଇଲେ, ବେଶ୍ କିଛି ପଇସା କରିନେବା ଲୋଭରେ । ସରକାରୀ ଜମିରେ ଥିବା ଗଛଗୁଡାକ ମଧ୍ୟ ଲୁଚାଇ ଚୋରାଇ କାଟି ଦିଆଗଲା । ଅତି ନିର୍ଦ୍ଦୟ ଓ ବେଆଇନ୍ ଭାବରେ । ଫଳରେ ଅନେକ ଜାଗା ଗଛଶୂନ୍ୟ ହୋଇଗଲା ଏବଂ ବର୍ଷାର ପରିମାଣ ମଧ୍ୟ କମିଗଲା । ଜଙ୍ଗଲରେ ଗଛଲଟା ଯେତେ ବେଶି ରହିବ ବର୍ଷା ସେତେ ବେଶି ହେବ ।

ତେଣୁ ବର୍ଷା ପ୍ରାୟ ହେଲା ନାହିଁ ।

ପାହାଡ ପର୍ବତରେ ଉଠିଥିବା ଜଙ୍ଗଲଟାର ଚେର ତଳ ମାଟିକୁ ଜାବୁଡି ଧରନ୍ତି, ଧସିଯିବାକୁ ଦିଅନ୍ତି ନାହିଁ । ଜଙ୍ଗଲ କଟା ହୋଇଗଲା ପରେ ମାଟିକୁ ଧରି ରଖିବା ପାଇଁ ଆଉ କିଛି ରହିଲା ନାହିଁ । ବର୍ଷା ହେଲେ ମାଟି ଧସିଯିବାକୁ ଲାଗିଲା । ଅବସ୍ଥା ଆହୁରି ଖରାପ ହୋଇଗଲା । ଜଙ୍ଗଲ କଟା ହୋଇଯିବା ପରେ ଫାଙ୍କା ଜମିକୁ ଯେଉଁ ବ୍ୟକ୍ତିମାନେ ଅକ୍ତିଆର କରି ନେଲେ ସେମାନେ ମୃତ୍ତିକା ସଂରକ୍ଷଣ ପ୍ରତି ମୋଟେ ଦୃଷ୍ଟି ଦେଲେ ନାହିଁ । ତେଣୁ ଉପର ମୁଣ୍ଡରେ ବର୍ଷା ହେବା ମାତ୍ରେ ବହୁତ ମାଟି ଧସି ପଡିଲା ଏବଂ ଅଭୟାରଣ୍ୟର ଗଡିଆଗୁଡିକୁ ପୋତି ପକାଇଲା ।

ଜଙ୍ଗଲଗୁଡାକ ମଧ୍ୟ ସ୍ପଞ୍ଜ୍ ଭଳି କାମ କରନ୍ତି । ସେଗୁଡାକ ବର୍ଷା ପାଣିକୁ ସଞ୍ଚୟ କରି ରଖନ୍ତି ଓ ଆସ୍ତେ ଆସ୍ତେ ଛାଡନ୍ତି । ଏହି ପାଣି ଝରଣା ହୋଇ ବହେ । 'ବର୍ଷା ଛାଡିଗଲା ପରେ ବି ଝରଣାଗୁଡିକରେ ପାଣି ବହୁଥାଏ । ଜଙ୍ଗଲ କଟା ହୋଇଗଲା ପରେ ଝରଣାଗୁଡିକ ଶୁଖିଗଲେ, କୁକଲ୍ ଜଙ୍ଗଲର ନଈ ଗଡିଆକୁ ଆଉ ପାଣି ମିଳିଲା ନାହିଁ ।

ଜଙ୍ଗଲ ସାଫ୍ ହୋଇଯିବା, ମାଟି ଧସିପଡିବା କେବଳ ଦିନକର ବା ବର୍ଷକର ଘଟଣା ନୁହେଁ । ବର୍ଷ ବର୍ଷ ଧରି ଗଛ କଟା ହୋଇଯିବା

ଫଳରେ ଏମିତି ଖରାପ ଅବସ୍ଥା ସୃଷ୍ଟି ହୋଇଥିଲା । ତେଣୁ ସେଥିପ୍ରତି କାହାରି ନଜର ରହିଲା ନାହିଁ । ଯାହା କ୍ଷତି ହେବାର ଥିଲା ହୋଇ ସାରି-ଥିଲା । ଫଳରେ ସେ ଅଞ୍ଚଳରେ ଭୀଷଣ ଜଳକଷ୍ଟ ପଡ଼ିଗଲା । ସବୁ ବର୍ଷ ନିୟମିତ ମରୁଡ଼ି ପଡ଼ିବା ଆଶଙ୍କାରେ ଲୋକେ ଆତଙ୍କିତ ହୋଇ ପଡ଼ିଲେ ।

ଅଭୟାରଣ୍ୟରେ ରହୁଥିବା ପଶୁପକ୍ଷୀ ସବୁଠୁ ବେଶି କଷ୍ଟ ପାଇଲେ । ହରିଣ-ଜାତୀୟ ପଶୁମାନେ ସବୁଠୁ ଅଧିକ ଦୁର୍ଦ୍ଦଶା ଭୋଗିଲେ । କାରଣ, ପାଣି ପିଇବାକୁ ସେମାନେ ଆସି ଗଡ଼ିଆ ପାଖରେ ଜମିଯାଉଥାନ୍ତି ଏବଂ ବାଘ, ଚିତା ଓ ବଣୁଆ କୁକୁରପଲ ବର୍ତ୍ତମାନ ବେଶ୍ ସହଜରେ ସେମାନଙ୍କୁ ମାରି ଖାଇ ଯାଉଥାନ୍ତି ।

ଅଭୟାରଣ୍ୟ ଦାୟିତ୍ୱରେ ଥିବା ଓ୍ୱାର୍ଡେନ୍ (ପରିଚାଳକ), ଚନ୍ଦନ୍ ବ୍ୟସ୍ତ ହୋଇପଡ଼ିଲେ । ବନ୍ୟଜନ୍ତୁ, ସେମାନଙ୍କ ରହିବା ଜାଗା, ଏପରିକି ଗଛ ପତ୍ରକୁ ରକ୍ଷା କରିବା ତାଙ୍କର ପ୍ରଥମ କର୍ତ୍ତବ୍ୟ ।

ଅଭୟାରଣ୍ୟର ପଶୁପକ୍ଷୀମାନଙ୍କର ଦୁର୍ଦ୍ଦଶା ସମ୍ପର୍କରେ ସେ ସରକାର ଓ ଜଙ୍ଗଲ ବିଭାଗ ମନ୍ତ୍ରୀଙ୍କ ପାଖକୁ ଚିଠି ଲେଖିଲେ । ସେଥିରେ ସେ ଅନୁରୋଧ କରିଥିଲେ ଯେ ଜଙ୍ଗଲ କାଟିବା ରୋକିବା ଦିଗରେ ଉଚିତ ବ୍ୟବସ୍ଥା କରାଯାଉ, ଏବଂ ପର୍ବତର ଢାଲୁ ଅଞ୍ଚଳମାନଙ୍କରେ ଯେତେ ସମ୍ଭବ ନୂଆ ଗଛ ଲଗାଯାଉ । ସେ ପୁଣି ଜଣାଇ ଦେଇଥିଲେ ଯେ ଖୁବ୍ ଶୀଘ୍ର ଏହା କରା ନ ଗଲେ ଅଭୟାରଣ୍ୟଟି କାଳକ୍ରମେ ପୁରାପୁରି ନଷ୍ଟ ହୋଇଯିବ । ଜଳକଷ୍ଟ ଦୂର କରିବା ଅତି ଜରୁରୀ । ଅଭୟାରଣ୍ୟଟିକୁ ପଶୁପକ୍ଷୀଙ୍କ ପାଇଁ ନିରାପଦ ଓ ସୁଖକର ସ୍ଥାନ କରି ରଖିବା ପାଇଁ ସେ ନିଜେ ଯାହା କରି ପାରିବେ କରିଥିଲେ ।

## 2

ଅଭୟାରଣ୍ୟର ପରିଚାଳକ ଚନ୍ଦନ୍‌ଙ୍କ ପାଇଁ ଗ୍ରୀଷ୍ମଋତୁ ସବୁବେଳେ ବଡ଼ ଅସୁବିଧାର ସମୟ ଥିଲା । ଏବଂ ପାଣିର ଅଭାବ ତାଙ୍କର ଅସୁବିଧାକୁ ବହୁ ଗୁଣରେ ବଢ଼ାଇ ଦେଉଥିଲା ।

ଅଭୟାରଣ୍ୟ ଭିତରେ ଯେଉଁ ଅଳ୍ପ କେତୋଟି ଗଡ଼ିଆ ଥିଲା ସେ ଆଡ଼କୁ ଚୋର ଶିକାରୀମାନେ ମାଡ଼ି ଆସିଲେ । ଚୋରାରେ ଶିକାର କରିବା ତ ଖରାପ କଥା । କିନ୍ତୁ ଶୋଷ ମେଣ୍ଟାଇବାକୁ ଆସୁଥିବା ପଶୁମାନଙ୍କୁ ଗୁଳି କରି ମାରିବା କେବଳ ଏକ ଅପରାଧ ନୁହେଁ, ଏହା ଅତି ନିଷ୍ଠୁର କାର୍ଯ୍ୟ

ମଧ୍ୟ । ଚୋର ଶିକାରୀମାନେ କିନ୍ତୁ ଏପରି ବେଆଇନ ଓ ନିର୍ଦ୍ଦୟ ଭାବରେ ଜନ୍ତୁମାନଙ୍କୁ ମାରିବା ପାଇଁ ମୋଟେ କୁଣ୍ଠିତ ନ ଥିଲେ । ଚୋର ଶିକାରୀର ଦଉକାର ଶିକାର, ସେ ଯେତେ ବେଶି ଜନ୍ତୁଙ୍କୁ ମାରି ପାରୁଥିଲା ସେତିକି ବେଶି ଖୁସି ହେଉଥିଲା । ତାକୁ ଧରିବାକୁ ପଡ଼ିବ, ଦଣ୍ଡ ଦେବାକୁ ହେବ ଓ ସାରା ଜୀବନ ପାଇଁ ଶିକ୍ଷା ଦେବାକୁ ପଡ଼ିବ ।

ଚୋର ଶିକାର ରୋକିବା ପାଇଁ ପରିଚାଳକ ଅନେକ ରକମର ଉପାୟ କଲେ । କୌଣସି ପଶୁକୁ ମାରୁଥିବାବେଳେ ଯଦି କେହି ଧରା ପଡ଼ୁଥିଲା, ପରିଚାଳକ ତାକୁ ପୁଲିସ୍ ଜିମା ଦେଇ ଦେଉଥିଲେ । ଚନ୍ଦ୍ରନ୍ ଥିଲେ ଖୁବ୍ ସାହସୀ । ସେ ବରାବର ଅଭୟାରଣ୍ୟ ସାରା ବୁଲାବୁଲି କରୁଥାନ୍ତି, ବେଳେବେଳେ ଜିପ୍‌ରେ ଏବଂ ଅନ୍ୟବେଳେ ଚାଲି ଚାଲି । ଦିନେ ସନ୍ଧ୍ୟାରେ ଜିପ୍‌ରେ ବସି ଗଲାବେଳେ ସେ ବହୁ ଦୂରରେ ବନ୍ଧୁକ ଫୁଟିବା ଶବ୍ଦ ଶୁଣି ପାରିଲେ । ଶେନ୍‌ବାଗା ଉତ୍ତର ଦିଗରୁ ସେ ଶବ୍ଦ ଆସୁଥିଲା । କିନ୍ତୁ ସେ ଜାଗାକୁ ଜିପ୍‌ରେ ଯାଇ ହେବ ନାହିଁ ଏବଂ ତାହା ଅଭୟାରଣ୍ୟର ଖୁବ୍ ଭିତର ପଟକୁ । ଚନ୍ଦ୍ରନ୍ ଠିକ୍ ଜାଣିପାରିଲେ ଯେ କେହି ଜଣେ ଶିକାର କରୁଛି ।



ଅଭୟାରଣ୍ୟ ପରିଚାଳକ ଜଙ୍ଗଲର ସବୁ ପଟେ ଆହୁରି କଡା ପହରା ଦେଲେ । କିନ୍ତୁ ଚୋର ଶିକାରୀମାନେ ତାଙ୍କ ହାବୁଡରୁ ଖସି ଯାଉଥାନ୍ତି । ତେଣୁ ସେ ସବୁଠୁ ଭଲ ଉପାୟଟି ଖୋଜି ଠିକ୍ କଲେ । ଜଙ୍ଗଲର ଜୀବଜନ୍ତୁ ଯେଉଁ ସବୁ ଗଡିଆ ପାଖକୁ ପାଣି ପିଇବାକୁ ଆସୁଥାନ୍ତି ସେଇ ସବୁ ଜାଗାରେ ଚୋର ଶିକାରୀମାନଙ୍କୁ ଧରିବାପାଇଁ ଅନେକ ରକମର ଫାନ୍ଦ ପାତିଲେ ।

ତା' ପରଦିନ ସେ ଜଗୁଆଳି (ଗାର୍ଡ)ମାନଙ୍କୁ ତିନୋଟି ଦଳରେ ବିଭକ୍ତ କରିଦେଲେ । ଦୁଇ ଜଣ ଜଙ୍ଗଲ ଅଧିକାରୀ (ଫରେଷ୍ଟର୍)ଙ୍କ ନେତୃତ୍ୱରେ ଦୁଇ ଦଳ ଗଲେ ନଈର ଦୁଇଟା ଚୂଆ ପାଖକୁ । ତୃତୀୟ ଦଳର ନେତୃତ୍ୱ ସେ ନିଜେ ନେଲେ । ସେ ଦଳରେ ଥିଲେ ଜଗୁଆଳି, ରଞ୍ଜୁ ଓ ଆଲାଗିରି ଏବଂ ଚନ୍ଦନ୍‌ଙ୍କ ପୁଅ ମୋହନ । ଚନ୍ଦନ୍ ଏମାନଙ୍କୁ ଧରି ଶେନ୍‌ବାଗା ଉପନି ଆଡକୁ ଚାଲିଲେ । ମୋହନର ସ୍କୁଲ ଛୁଟି ହୋଇ ଯାଇଥିବାରୁ ସେ ଘରକୁ ଆସିଥାଏ । ଦଳ ସାଙ୍ଗରେ ଯିବା ପାଇଁ ସେ ଖୁବ୍ ଅଳି କଲା । ତା' ବାପା କୁଣ୍ଠ କୁଣ୍ଠ ହୋଇ ଶେଷରେ ରାଜି ହେଲେ ।

ଗଡିଆ ଆଡକୁ ଅଧା ବାଟ ଯାଇଛନ୍ତି କି ନାହିଁ ଚନ୍ଦନ୍ ଗୋଟାଏ ପାଖ ବାଟ ଧରିବା ପାଇଁ ଠିକ୍ କଲେ । ଦୁଇ ପର୍ବତ ସନ୍ଧିରେ ଗଭୀର, ଅଣଓସାରିଆ ରାସ୍ତା, ଘଞ୍ଚ ବାଉଁଶ ଝାଡରେ ଭର୍ତ୍ତି । ଜାଗାଟା ଖୁବ୍ ଅନ୍ଧାରୁଆ, ତେଣୁ ସେମାନେ ଦୂରର ଜିନିଷ କିଛି ଦେଖି ପାରୁ ନ ଥିଲେ । ସେ ରାସ୍ତାରେ ଯିବା ଲାଗି ସମସ୍ତେ ଡରୁଥିଲେ । ବାଉଁଶ କଣି ଖାଇବାକୁ ହାତୀମାନେ ସେ ଜାଗାକୁ ପ୍ରାୟ ଆସନ୍ତି, ଗଛ ଛାଇରେ ବିଶ୍ରାମ ନିଅନ୍ତି ଏବଂ ଖରା ଦାଉରୁ ରକ୍ଷା ପାଆନ୍ତି ।

ଚନ୍ଦନ୍ ଏହି ବିପଦ କଥା ଜାଣିଥିଲେ ଏବଂ ଦଳର ସମସ୍ତଙ୍କୁ ବିଷୟରେ ସତର୍କ କରି ଦେଇଥିଲେ । ପବନ ସେମାନଙ୍କୁ ବହୁତ ସାହାଯ୍ୟ କଲା । ସେମାନଙ୍କ ଆଡ୍ ନ ବହି ସେମାନଙ୍କ ଆଡକୁ ବହୁଥିଲା । ଏହା ଫଳରେ ମଣିଷ ଦେହର ଗନ୍ଧ, ପଶୁମାନଙ୍କ ଆଡକୁ ଯାଇପାରୁ ନ ଥିଲା । ଚନ୍ଦନ୍ କେବଳ ଡରୁଥିଲେ କାଳେ ଏକୁଟିଆ ବୁଲୁଥିବା ପୁରୁଷ ହାତୀ ହାବୁଡରେ ପଡି ଯିବେ । ହାତୀମାନେ ପଲ ପଲ ହୋଇ ବୁଲୁଥିଲା ବେଳେ ଖୁବ୍ ଶବ୍ଦ କରନ୍ତି । କିନ୍ତୁ ଏକୁଟିଆ ବୁଲୁଥିବା ପୁରୁଷ ହାତୀ ଗୁଡାକ ଖୁବ୍ ଚୁପ୍‌ଚାପ୍ ଓ ସତର୍କ । କେତେକ ପୁରୁଷ ହାତୀ ପଲ ଛାଡି ପଳାଇଯାନ୍ତି । ଅଧିକ ବଳୁଆ ବଡ ହାତୀମାନେ ସେମାନଙ୍କୁ ପଲରୁ ତଡି ଦିଅନ୍ତି । ଅନ୍ୟ ପୁରୁଷ ହାତୀଗୁଡାକ ବୁଢା ହୋଇଗଲେ ଏକୁଟିଆ ହୋଇଯାନ୍ତି । ଆହୁରି ଏକ ରକମର ହାତୀ ଅଛନ୍ତି । ସେମାନେ ପ୍ରାୟ କମ୍

ବୟସର ପୁରୁଷ ହାତୀ ଦଳର ନିୟମ କାନୁନ୍‌ରୁ ରକ୍ଷା ପାଇବା ପାଇଁ ଖସି ପଳାଇ ଯାନ୍ତି । ପ୍ରାୟ ସବୁବେଳେ ଅଧିକାଂଶ ଏକୁଟିଆ ବୁଲୁଥିବା ହାତୀ ଅଳ୍ପ କଥାରେ ରାଗି ଯାନ୍ତି, ଉତ୍ପାତ କରନ୍ତି ଏବଂ ମଣିଷମାନଙ୍କୁ ଘୃଣା କରନ୍ତି ।

ଚନ୍ଦ୍ରନ୍ ଓ ତାଙ୍କ ଦଳ ଥରକୁ ଥର ଅଟକୁଥାନ୍ତି, କାନପାତି ଶୁଣୁଥାନ୍ତି ଏବଂ ତା'ପରେ ଆଗଉ ଥାନ୍ତି । ଛୋଟ ପିଲା ମୋହନ ସମସ୍ତଙ୍କ ପଛରେ ଥାଏ । କାଳେ ହଠାତ୍ ସମସ୍ତଙ୍କୁ ଦୌଡ଼ି ପଳାଇବାକୁ ପଡ଼ିବ । ବେଳେ ବେଳେ ପକ୍ଷୀଙ୍କ ରବ, ବାଉଁଶ ଝାଡ଼ର ଶବ୍ଦ ଓ ଝିଙ୍କାରୀଙ୍କ ଡାକ ଛଡ଼ା ସବୁଆଡ଼ ଏକାବେଳକେ ଚୁପ୍‌ଚାପ୍ । ଦଳକୁ ହଠାତ୍ ଗୋଟାଏ ବାଙ୍କ ବୁଲିବାକୁ ପଡ଼ିଲା ଏବଂ ଆଗରେ ବାଟ ମଝିଟାରେ ଠିଆ ହୋଇଛି ଭୟଙ୍କର ଲମ୍ବାଦାନ୍ତ ଦନ୍ତା ହାତୀଟେ । ଲମ୍ବାଦାନ୍ତ ଦନ୍ତା ହାତୀଙ୍କର ଦାନ୍ତ ଦୁଇଟା ମୁହଁରୁ ସମାନ୍ତର ହୋଇ ବାହାରି ନ ଥାଏ, ଦାନ୍ତ ଯୋଡ଼ାକ ଶୁଣ୍ଢ ଉପରେ ପ୍ରାୟ ତଳ ଉପର ହୋଇ ଲମ୍ବି ହୋଇ ଯାଇ ଥାଏ । ସେ ଦୃଶ୍ୟ ଭାରି ଭୟଙ୍କର, ଦେଖିଲେ ଛାତି ଥରି ଯିବ । ଲୋକମାନେ ବୁଲି ପଡ଼ି ଦୌଡ଼ିବାକୁ ଲାଗିଲେ । ହାତୀ ସେମାନଙ୍କୁ ଯେମିତି ଦେଖିଛି ଖୁବ୍ ଜୋର୍‌ରେ ଗର୍ଜନ କଲା ଓ ସେମାନଙ୍କ ଆଡ଼କୁ ମାଡ଼ି ଗଲା । ଭୟରେ ସମସ୍ତଙ୍କର ପିଳେହି ପାଣି । ଦଳରେ ସାନ ଥିଲା ଗେଡ଼ା ଓ ମୋଟା, ଅନ୍ୟମାନଙ୍କ ଭଳି



ସେ ଜୋର୍‌ରେ ଦୌଡ଼ି ପାରୁ ନ ଥିଲା । ହାତୀଟା ପାୟ ତା' ଉପରକୁ ଚଢ଼ି-ଯିବାକୁ ବସିଛି, ଏତିକିବେଳେ ରଞ୍ଜୁର ଉଜ୍ଜ୍ୱଳ ଶାଗୁଆ ରଙ୍ଗର ପଗଡ଼ିଟା ଖସି ପଡ଼ିଲା (ପଗଡ଼ିଟା ଜ୍ରୁଆଲିମାନଙ୍କ ପୋଷାକର ଗୋଟାଏ ଅଂଶ ଥିଲା ) । ପଗଡ଼ିଟା ଖସି ପଡ଼ି, ପୁର ଖୋଲିଯାଇ ରାସ୍ତା ଉପରେ ଲମ୍ବି ଗଲା । ମାଡ଼ି ଆସୁଥିବା ହାତୀଟା ଭାବିଲା ଯେ ରଞ୍ଜୁ ନିଜେ ଝୁଣ୍ଟି ପଡ଼ି ରାସ୍ତାରେ ଚିତ୍‌କାତ୍ ମାରି ପଡ଼ିଛି । ସେ ଅଟକିଯାଇ ପଗଡ଼ି କନାଟାକୁ ଦଳା ଚକଟା କଲା । ସେତେବେଳେ ସେ ରାଗରେ ଖୁବ୍ ଗର୍ଜନ କରୁଥାଏ । ହାତୀଟା ତା ଭୁଲ୍ ବୁଝି ପାରିଲା ବେଳକୁ ଚନ୍ଦ୍ରନ୍ ଓ ତାଙ୍କ ଦଳ ବେଶ୍ ଦୂରକୁ ପଳାଇଯାଇ ସାରିଥିଲେ ।

୩

ସେମାନେ ଅଳ୍ପକରେ ଖସିଗଲେ, ଭାଗ୍ୟ ଭଲ ଥିଲା । ଯେତେବେଳେ ସେମାନେ ଜାଣିଲେ ଯେ ଭଦାଦାର ହାତୀଟା ଆଉ ଗୋଡ଼ାଉ ନାହିଁ ସେମାନେ ଅଟକିଯାଇ ବିଶ୍ରାମ ନେଲେ । ଚନ୍ଦ୍ରନ୍‌ଙ୍କ ଭଳି ଜଣେ ଜାଣିବା ଶୁଣିବା ଜଙ୍ଗଲ ଅଧିକାରୀଙ୍କ ପାଇଁ ମଧ୍ୟ ଏହି ଘଟଣାଟା ଥିଲା ଅତି ଭୟଙ୍କର । ସେ ତାଙ୍କର ପୁଅ ପାଇଁ ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ । କିନ୍ତୁ ମୋହନ ମୋଟେ ଡରି ନ ଥିଲା । ବରଂ ଏ ଘଟଣା ତାକୁ ବେଶ୍ ରୋମାଞ୍ଚକର ଓ ଉତ୍ତେଜନାପୂର୍ଣ୍ଣ ମନେ ହେଲା ।

"ଘରକୁ ପଳେଇବା ?" ଚନ୍ଦ୍ରନ୍ ପଚାରିଲେ । କିନ୍ତୁ ପିଲାଟି ସେମାନଙ୍କ ସାଙ୍ଗରେ ଯିବାକୁ ଜିଦ୍ କଲା ।

ଅଭୟାରଣ୍ୟ ପରିଚାଳକ ଭାବିଥିଲେ ଯେ ମଧ୍ୟାହ୍ନ ପରେ ପରେ ସେମାନେ ଜେନ୍ ବାଗା ଉରନି ପାଖରେ ପହଞ୍ଚିଯିବେ ଏବଂ ଚୋର ଶିକାରୀମାନେ ଆସିଗଲେ ସେମାନଙ୍କୁ ଧରି ନେବେ । କିନ୍ତୁ ହାତୀଟା ସାଙ୍ଗରେ ଯେଉଁ ଘଟଣା ଘଟିଗଲା ସେଥିରେ ତାଙ୍କର ଡେରି ହୋଇଗଲା । ତେଣୁ ଚନ୍ଦ୍ରନ୍ ତାଙ୍କର ଯୋଜନା ବଦଳାଇ ଦେଲେ । ଚୋର ଶିକାରୀଙ୍କୁ ଧରିବା ଲାଗି ଫାନ୍ଦ ପାତିବା ବଦଳରେ ସେ ସେମାନଙ୍କୁ ଆକ୍ରମଣ କରିବାକୁ

ଠିକ୍ କଲେ । ଗଡ଼ିଆ ପାଖରେ ପହଞ୍ଚିବା କ୍ଷଣି ସେ ତାଙ୍କ ଦଳର ଲୋକଙ୍କୁ ଫିସ୍ ଫିସ୍ ହୋଇ କହିଲେ, ଲଟା ଗହଳରେ ଲୁଚିଯାଇ ଚୁପ୍ ହୋଇ ବସିବାକୁ । ତା' ପରେ ସେ ଖୁବ୍ ସତର୍କତାର ସହିତ ଲଟା ଗହଳରେ ହାମୁଡ଼ି ହାମୁଡ଼ି ଆଗେଇଲେ । ଚାରିଆଡ଼େ ଶୁଖିଲା ପତ୍ର ପଡ଼ିଛି, କିନ୍ତୁ ସେ ଖୁବ୍ ସାବଧାନରେ ସେଗୁଡ଼ିକୁ ନ କୁଦି ଚାଲିଥାନ୍ତି, କାଳେ ଜଣା ପଡ଼ି ଯିବ ଯେ ସେ ସେଠି ଅଛନ୍ତି । ଶେଷରେ ସେ ଏମିତି ଗୋଟାଏ ଜାଗାରେ ପହଞ୍ଚିଲେ ଯେଉଁଠୁ କି ଗଡ଼ିଆଟାକୁ ଭଲ ଭାବରେ ଦେଖି ହେବ । ସେ ତାଙ୍କର ବାଇନୋକୁଲାର୍ (ଛୋଟ ଦୂରବୀକ୍ଷଣ ଯନ୍ତ୍ର) କାଢ଼ିଲେ ଏବଂ ଆଖିରେ ଲଗାଇ ଚାରିଆଡ଼ ଭଲ ଭାବରେ ଦେଖି ନେଲେ । ଗଡ଼ିଆ ଚାରିକଡ଼େ ବୁଦାଏ ଗଛ ଥିଲା କିନ୍ତୁ କେତେକରେ ମୋଟେ ପତ୍ର ନ ଥିଲା, କେତେକରେ କଅଁଳ ପତ୍ର ଗଜୁରିଥିଲା । ଅନ୍ୟ ଗଛଗୁଡ଼ାକ ଏମିତି କିଛି ବଡ଼ ନ ଥିଲେ ଯେ ସେଗୁଡ଼ାକ ଉପରେ ଗୋଟାଏ ମଞ୍ଚା କରିହେବ । କିନ୍ତୁ ସେମାନଙ୍କ ଭିତରେ ଗୋଟାଏ ବଡ଼ ଆମ୍ବ ଗଛ ଥିଲା । ସେଟା ଏତେ ବଡ଼ ଓ ଘଞ୍ଚ ହୋଇ ରହିଥିଲା ଯେ ତା'ର ଡାଳ ଉପରେ ବେଶ୍ କିଛି ଲୋକ ଲୁଚି ବସି ରହି ପାରିବେ । ଚନ୍ଦନ୍ ସେ ଗଛଟାକୁ ଭଲ କରି ଦେଖି ନେଲେ । ବହୁ କଷ୍ଟରେ ସେ ଗଛଟାର ଠିକ୍ ମଝାମଝି ଗୋଟିଏ ମଞ୍ଚା ଥିବା ଦେଖି ପାରିଲେ । ସେଠି ଡାଳପତ୍ର ଥିଲା ସବୁଠୁ ବେଶି ଘଞ୍ଚ । ତଳୁ ପ୍ରାୟ ଛ' ମିଟର ଉପରେ ମଞ୍ଚାଟା ବନ୍ଧା ହୋଇଥିଲା । ମଞ୍ଚା ଉପର ପାଖ, ତଳପାଖ ପତ୍ରରେ ଘୋଡ଼ାଇ ଦିଆ ଯାଇଥିଲା, ଯେ ଦେଖିବ ଭାବିବ ଯେ ଗଛର ଡାଳ, ଆଉ କିଛି ନୁହେ । ଆହୁରି ଭଲ କରି ଦେଖିବାରୁ ଗଛ ଡାଳମାନଙ୍କ ଭିତରେ ଛୋଟ ଛୋଟ ଫାଙ୍କ ଥିବା ଦିଶିଲା । ଅଭୟାରଣ୍ୟ ପରିଚାଳକ ଦେଖିଲେ ଯେ ଏମିତି ଦୁଇଟା ଫାଙ୍କ ବାଟେ ବାହାରି ଆସିଛି ଦୁଇଟା ବନ୍ଧୁକର ନଳୀ । ଚୋର ଶିକାରୀମାନେ ପୂରା ଲୁଚି ରହିଥିଲେ । କିନ୍ତୁ ସେମାନଙ୍କ ବନ୍ଧୁକ ସେମାନେ ଅଛନ୍ତି ବୋଲି ଜଣାଇ ଦେଉ ଥିଲା ।

ଚନ୍ଦନ୍ ହାମୁଡ଼ି ହାମୁଡ଼ି ତାଙ୍କ ଲୋକମାନଙ୍କ ପାଖକୁ ବାହୁଡ଼ି ଆସିଲେ ଏବଂ ବର୍ତ୍ତମାନ ସେ କ'ଣ କରିବେ ସେମାନଙ୍କୁ କହିଲେ । କିନ୍ତୁ ଆଲାଗିରି ଆପତ୍ତି କଲା, "ସାର୍, ସେମାନଙ୍କ ଆଡ଼କୁ ଏକା ଗଲେ ଆପଣ ଭୟଙ୍କର ବିପଦରେ ପଡ଼ି ପାରନ୍ତି ।"

ରାଜୁ ତା' ସାଙ୍ଗରେ ଯୋଗ ଦେଲା ଏବଂ କହିଲା, "ଚାଲନ୍ତୁ, ଆମେ ସମସ୍ତେ ମିଶି ସେମାନଙ୍କୁ ମାଡ଼ି ବସିବା ।"

କିନ୍ତୁ ଚନ୍ଦନ୍ ଭାବି ଦେଖିଲେ ଯେ ତାଙ୍କ ଯୋଜନା ଅନୁସାରେ କାମ କଲେ ସବୁଠୁ ଭଲ ହେବ । ସେ ଯାହା କହିବେ ତାହା ଠିକେ ଠିକେ

ମାନିବାକୁ ହେବ ବୋଲି ଦଳର ଲୋକଙ୍କୁ ଚେତାଇଦେଇ ସେ ସାହସର ସହିତ ଏକା ଏକା ଆଗକୁ ମାଡ଼ିଗଲେ । ମୋହନ ଗୋଟିଏ ଗଛ ଆଢୁ-ଆଳରେ ଲୁଚି ରହି ଚନ୍ଦ୍ରନ୍‌ଙ୍କୁ ଲକ୍ଷ୍ୟ କରୁଥାଏ । ବାପାଙ୍କ ଉପରେ ବିପଦ ପଡ଼ିପାରେ ବୋଲି ସେ ଡରୁଥାଏ, କିନ୍ତୁ ତାଙ୍କର ସାହସ ଦେଖି ସେ ଖୁବ୍ ଗର୍ବ ଅନୁଭବ କଲା ।

ଅଭୟାରଣ୍ୟ ପରିସ୍ଥଳକ ମାଣା ପାଖ ଆଖାରେ ପହଞ୍ଚି ଦେଖିଲେ ଛପ କଗୁଡ଼ିକ ଲୁଚ୍ଛ ଦିଆ ଗଲାଣି । ସେ ଆମ୍ବ ଗଛ ତଳେ ଯାଇ ଠିଆ





ହେଲେ ଏବଂ ଚୋର ଶିକାରୀମାନଙ୍କୁ ଓହ୍ଲାଇ ଆସିବାକୁ ଆଦେଶ ଦେଲେ । "ମୁଁ ଜାଣିଛି ତମେମାନେ ସେଠି ଲୁଚିଛ" ବୋଲି ସେ ପାଟିକରି କହିଲେ । କିନ୍ତୁ ସେମାନେ ଚଙ୍କିଲେ ନାହିଁ । ସେ ତାଙ୍କର ଆଦେଶକୁ ଦୋହରାଇଲେ ।

ଚୋର ଶିକାରୀମାନଙ୍କ ଭିତରୁ ଜଣେ ଥଟ୍ଟା କରି ଉତ୍ତର ଦେଲା, "ତମେ ଯଦି ଆସି ପାରିବ ଆମକୁ ଧର," ଏବଂ ସେ ଚନ୍ଦ୍ରନ୍‌ଙ୍କ ଆଡକୁ

ବନ୍ଧୁକ ଉଠାଇ ଧରିଲା ।

ଏହା ଦେଖି ପରିବ୍ରାଜକ ରାଗିଗଲେ । ସେ ପାଟିକରି କହିଲେ ଯେ ସେ ଏକା ସେଠି ନାହାଁନ୍ତି, ତାଙ୍କର ଲୋକମାନେ ଶ୍ୱେତ ଶିକାରୀମାନଙ୍କୁ ଘେରି ଗଲେଣି । ତାଙ୍କର ପାଟି ଜଗୁଆଳିମାନଙ୍କୁ ମଧ୍ୟ ସତର୍କ କରାଇ ଦେଲା । ସେମାନେ ହ୍ୱିସିଲ୍ ବଜାଇ ଭିନ୍ନ ଭିନ୍ନ ଜାଗାରେ ଛକିଗଲେ ସେମାନେ ପୁଣି ହ୍ୱିସିଲ୍ ବଜାଇଲେ । ମନେ ହେଲା ସତେ ଯେମିତି ସେମାନଙ୍କ ଛଡ଼ା ଆହୁରି ଅନେକ ଲୋକ ଅଛନ୍ତି, ଗଡ଼ିଆ ଚାରିକଡ଼ରେ । ମୋହନ ତା' ଲୁଚିବା ଜାଗାରୁ ବାପାଙ୍କ ହ୍ୱିସିଲ୍ ବଜାଇ, ପତ୍ର ଉପରେ ଗୋଡ଼ ବାଡେଇ ଶବ୍ଦ କରି ସେମାନଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କଲା । ଗଡ଼ିଆ ପାଖର ଗୋଟାଏ ବଡ଼ ବୁଦା ଆଢୁଆଳରେ ଦଳେ ସମ୍ବର ଶୋଇଥିଲେ; ସେମାନେ ଏସବୁ ଶବ୍ଦ ଶୁଣି ଗଡ଼ିଆ ଚାରିକଡ଼େ କେତେ ଘେରା ବୁଲିଗଲେ କିଛି ବୁଝି ନ ପାରି । ଜାଗାଟା ନାନା ରକମର ଶବ୍ଦରେ ଭର୍ତ୍ତି ହୋଇଗଲା ।

ଶ୍ୱେତ ଶିକାରୀମାନେ ଖୁବ୍ ଚାଲାକ୍ ଚତୁର ଲୋକ ଥିଲେ । ସେମାନେ ପରସ୍ପର ଯୁକ୍ତି କଲେ, "ପ୍ରକୃତରେ ଯଦି ଜଙ୍ଗଲରେ ଏତେ ଲୋକ ଅଛନ୍ତି ସେମାନେ ପଦାକୁ ବାହାରୁ ନାହାଁନ୍ତି କାହିଁକି ?"

ସେମାନେ କ'ଣ ଭାବୁଛନ୍ତି ଚନ୍ଦନ୍ ଅନୁମାନ କରିନେଲେ ଏବଂ କାଳେ ସେମାନେ ତାଙ୍କର ମିଛ କଥାଟାକୁ ମିଛ ବୋଲି ଜାଣିନେବେ, ସେଥିପାଇଁ ପାଟିକରି ତାଙ୍କ ଲୋକଙ୍କୁ କହିଲେ, "ଏମାନେ ନ ଓହ୍ଲାଇଲା ଯାଏଁ ତମେ କେହି ବାହାରକୁ ବାହାରନି । ଦେଖ, କେହି ଯେମିତି ଗୁଳି ମାଡ଼ ନ ଖାଅ ।"

ଏହା ଶୁଣି ଶ୍ୱେତ ଶିକାରୀମାନେ ନିଶ୍ଚିତ ହୋଇଗଲେ ଯେ ପ୍ରକୃତରେ ପରିବ୍ରାଜକଙ୍କ ଲୋକମାନେ ସେମାନଙ୍କୁ ଘେରି ରହିଛନ୍ତି । ଶେଷରେ ଚନ୍ଦନ୍ ସେମାନଙ୍କୁ ସାବଧାନ କରାଇ ଦେଲେ, "ଯଦି ତମେ ସବୁ ଏକ୍ଷଣି ତଳକୁ ନ ଆସିବ ମୁଁ ଯାଇ ସମସ୍ତଙ୍କୁ ଗୋଇଠା ମାରି ନିକାଳି ଦେବି ।" ଏହା କହି ସେ ମଞ୍ଚାର ସିଡ଼ି ଚଢ଼ିବାକୁ ଲାଗିଲେ ।

ଶ୍ୱେତ ଶିକାରୀମାନେ ଡରିଗଲେ ଏବଂ ଓହ୍ଲାଇ ଆସିବାକୁ ଆଉ ଡେରି କଲେ ନାହିଁ । ସେମାନେ ଯେମିତି ତଳକୁ ଆସିଛନ୍ତି ଅଭୟାରଣ୍ୟ ପରିବ୍ରାଜକ ସେମାନଙ୍କ ହାତରୁ ବନ୍ଧୁକତକ ଛଡ଼ାଇ ନେଲେ । ତା' ପରେ ଦୁଇ ଜଣଯାକ ଜଗୁଆଳି ଓ ମୋହନ ଗଛ ବୁଦା ଆଢୁଆଳରୁ ବାହାରି ପଡ଼ି ସେମାନଙ୍କ ଆଡ଼କୁ ଆଗେଇ ଆସିଲେ । ସେମାନଙ୍କର ବାହାନା ଏତେ

କାମ ହେଲା ଦେଖି ସେମାନେ ଖୁସି ହୋଇଗଲେ । ଦି'ଜଣ ଜଗୁଆଳି ଓ ଗୋଟିଏ ଛୋଟ ପିଲାକୁ ଦେଖି ଶ୍ୱେତ ଶିକାରୀମାନଙ୍କ ମୁଣ୍ଡ ଲାଜରେ ନଇଁଗଲା । ହଠାତ୍ ଜଣେ ଗୋଟାଏ ଉପାୟ ପାଇଲା । ସେ ଭାବିଲା ଯେ ସେ ଯଦି କୌଣସି ପ୍ରକାରେ ମୋହନକୁ ଧରି ପକାଏ ତେବେ ତାକୁ ପଣ ରଖି ସେମାନେ କେମିତି ହେଲେ ଖସିଯାଇ ପାରିବେ । ମୋହନ ଯେମିତି



ଆସି ସେମାନଙ୍କ ପାଖରେ ପହଞ୍ଚିଛି ଜଣେ ଚୋର ଶିକାରୀ କ'ଣ କଲା ନା ତା' ଶିକାର ଛୁରୀଟା ବାହାର କରି ମୋହନକୁ ଧରି ପକାଇବାକୁ ମାଡି ଆସିଲା । କିନ୍ତୁ ମୋହନର ବାପା ତା' ଆଗରୁ ଜୋର୍‌ରେ ମାଡି ଆସିଲେ । ଚୋର ଶିକାରୀ ଜଣକ ମୋହନକୁ ଧରି ପକାଇବାକୁ ଯାଉଛି, ଏତିକି ବେଳେ ଚନ୍ଦନ୍ ତା' ଆଗକୁ ମାଡି ଆସି ଗୋଟାଏ ପ୍ରଚଣ୍ଡ ମୁଥ ମାରି ତାକୁ ତଳେ ପକାଇ ଦେଲେ । ଚୋର ଶିକାରୀମାନେ ଯେଉଁ ଟିକକ ଗଣ୍ଡଗୋଳ ସୃଷ୍ଟି କରିବେ ବୋଲି ଭାବିଥିଲେ ତା' ଫସର ଫାଟିଗଲା । ଜଗୁଆଳି ମାନେ ଜଲ୍‌ଦି ଜଲ୍‌ଦି ସେମାନଙ୍କୁ ହାତକଡି ପକାଇ ଦେଲେ, କାଳେ ସେମାନେ ଆହୁରି କିଛି ଗଣ୍ଡଗୋଳ ଭିଆଇବେ । ତା' ପରେ ଚୋର ଶିକାରୀମାନଙ୍କୁ ଚଲାଇ ଚଲାଇ ନେଇ ପୁଲିସ୍ ଥାନାରେ ପହଞ୍ଚାଇ ଦିଆଗଲା ।



# ଦନ୍ତା ହାତୀ ଶିକାର

ଅଭୟାରଣ୍ୟ ପରିଚାଳକ ଶଙ୍କ୍ରମ୍ ଦିନେ ସକାଳେ ଅଫିସ୍‌ରେ ବସି କାମ କରୁଥିଲେ ଏତିକିବେଳେ ଜଣେ ଲୋକ ଧଇଁ ସଇଁ ହୋଇ ତାଙ୍କ ଟେବୁଲ୍ ପାଖକୁ ଦୌଡ଼ି ଆସିଲା ଏବଂ ମୂର୍ଚ୍ଛା ହୋଇ ପଡ଼ିଗଲା । ତା' ଦେହଯାକ ରକ୍ତ, ଲୁଗାପଟା ଛିଣ୍ଡାଛିଣ୍ଡି କୁହୁ କୁତା । ପରିଚାଳକ ଉଠି ପଡ଼ି ତା' ପାଖକୁ ମାଡ଼ିଗଲେ ଓ ତା' ଦେହର ଖଣ୍ଡିଆ ଖାବରା ଜାଗାଗୁଡ଼ିକୁ ଭଲ କରି ଦେଖିଲେ । ଘା' ଗୁଡ଼ାକ ବେଶି ବେଶି ଗହୀରିଆ ନୁହେଁ, ଖାଲି ଯାହା ଉପର ଚମ ଏଠି ସେଠି କଟି ଯାଇଛି । କିନ୍ତୁ ଲୋକଟା ବହୁତ ବେଶି ଡରି ଯାଇଥାଏ । ନ ହେଲେ, ତା' ଦେହର ସେମିତି ବିଶେଷ କିଛି କ୍ଷତି ହୋଇ ନ ଥାଏ । ଖଣ୍ଡିଆ ଖାବରା ଜାଗା ଗୁଡ଼ିକରେ ଔଷଧ ଲଗାଉ ଲଗାଉ ଲୋକଟାର ଚେତା ଫେରିଲା । ସେ ପୂରା ଚେତା ହେବା ପରେ ପରିଚାଳକ ତା'କୁ କ'ଣ ହେଲା ବୋଲି ପଚାରିଲେ ।



ଲୋକଟି କହିଲା ଯେ ସେ ଆଉ ତା' ସାଙ୍ଗ ସବୁଦିନ ପରି ସେଦିନ ସକାଳେ ଶୁଖିଲା କାଠ ଗୋଟାଇବାକୁ କୁକୁଲ ଜଙ୍ଗଲ ଭିତରକୁ ଯାଇଥିଲେ । ଜଙ୍ଗଲି ନଈ ନେଲିଓଡାଇ ପାଖରେ ପହଞ୍ଚିଛନ୍ତି, ସେଠିକାର ଘଞ୍ଚ ବୁଦା ଗହଳରୁ ବାହାରି ଆସି ଗୋଟେ ହାତୀ ସେ ଦୁହିଁଙ୍କୁ ଗୋଡାଇଲା । ସେ ଦୁହେଁ ଦୌଡିଲେ । ତା' ସାଙ୍ଗ ଅପେକ୍ଷା ସେ ହାତୀର ବେଶି ପାଖରେ ଥିଲା । ହାତୀ ପ୍ରାୟ ତା' ଉପରକୁ ଚଢି ଆସୁଛି ଏତିକିବେଳେ ସେ ଝୁଣ୍ଟି ତଳେ ପଡିଗଲା । ଭାବିଲା ଯେ ତା'ର ମୃତ୍ୟୁ ନିଶ୍ଚିତ । କିନ୍ତୁ ତା' ଭାଗ୍ୟ ଭଲ, ସେ ଗୋଟିଏ ଗାତ ଭିତରକୁ ଗଡି ପଡିଲା । ହାତୀଟା ସେମିତି ଗୋଡାଇ ଗୋଡାଇ ତା' ସାଙ୍ଗକୁ ଧରି ନେଲା ଓ ତାକୁ ପାଦରେ ଦଳି ମାରି ଦେଲା । ସେ ଡରରେ, ଜାନିଆଁରେ ଉଠି ପଡି ଅନ୍ଧାଧୁନିଆ ଦୌଡିଲା କଣ୍ଟାଝଣ୍ଟା ନ ମାନି । ତା' ଲୁଗାପଟା ଚିରି ଗଲା, ଦେହସାରା ଖଣ୍ଡିଆ ଖାବରା ହୋଇଗଲା। ଶେଷରେ ସେ ଆସି ପହଞ୍ଚିଲା ପରିରକ୍ଷକଙ୍କ ଅଫିସ୍‌ରେ । ଲୋକଟା କହିଲା ଯେ ମାରଣା ହାତୀଟା ଗୋଟାଏ ଛଦାଦାନ୍ତ ହାତୀ ।

ଅଭୟାରଣ୍ୟ ପରିରକ୍ଷକ ଓ ତାଙ୍କର ଲୋକେ କାଠ ଗୋଟାଳି ଲୋକଟା ସାଙ୍ଗରେ ତା' ସାଙ୍ଗ ମରି ପଡିଥିବା ଜାଗାକୁ ଗଲେ । ଦନ୍ତା ହାତୀଟା ସେତେବେଳ ଯାଏଁ ସେଠି ସେମିତି ଠିଆ ହୋଇଥାଏ । ତାକୁ ଘଉଡାଇ ଦେଇ ସେମାନେ କାଠ ଗୋଟାଳିର ଶବକୁ ଉଠାଇ ଆଣିଲେ ।

ଲୋକଟା ମରିବା କଥା ପରିରକ୍ଷକ ଅଭୟାରଣ୍ୟ ମାନଙ୍କର ମୁଖ୍ୟ ପରିରକ୍ଷକଙ୍କୁ ଲେଖି ଜଣାଇବା ଦରକାର । ଏଥିପାଇଁ ସେ ନିଜେ ଠିକ୍ ଭାବରେ ଜାଣିବାକୁ ପଡିବ କେଉଁ ଜନ୍ତୁଟା ପ୍ରକୃତରେ ଲୋକଟାକୁ ମାରିଛି । ଶବ ପାଖରେ ଯେତେ ସବୁ ଖୋଜ ପଡିଥିଲା ସେଗୁଡିକ ଦନ୍ତା ହାତୀଟାର ଖୋଜ ସାଙ୍ଗରେ ମିଳିଗଲା । ଦନ୍ତା ହାତୀଟା ପୁଣି ସେହି ଜାଗାରେ ଥିଲା । ଏଥିରେ ଲୋକଟାକୁ ପ୍ରକୃତରେ କିଏ ମାରିଛି ଜାଣିବା ସହଜ ହୋଇଗଲା । ତେଣୁ କାଠ ଗୋଟାଳି ଜଣକ ଯୋଉ କହିଲା ଯେ ଛଦାଦାନ୍ତ ହାତୀଟା ତା' ସାଙ୍ଗକୁ ମାରିଛି ସେଥିରେ ପରିରକ୍ଷକ ଚନ୍ଦ୍ରନ୍‌ଙ୍କର ଆଉ କିଛି ସନ୍ଦେହ ରହିଲା ନାହିଁ । ରିପୋର୍ଟ ଲେଖା ହୋଇ ପଠାଇ ଦିଆଗଲା ।

ଅଭୟାରଣ୍ୟମାନଙ୍କର ମୁଖ୍ୟ ପରିରକ୍ଷକ କିଛି ଦିନ ଧରି ଦନ୍ତା ହାତୀଟାର ଉତ୍ପାତ ବିଷୟରେ ନାନା ରକମର ରିପୋର୍ଟ ପାଉଥାନ୍ତି । କିନ୍ତୁ ହାତୀଟା କୌଣସି ରୋଗରେ ପଡି ଏମିତି ହେଉଛି ଏବଂ ଶୀଘ୍ର

ଭଲ ହୋଇଯିବ ଭାବି, ସେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ନ ଥିଲେ । ବର୍ତ୍ତମାନ ଯେତେବେଳେ କାଠ ଗୋଟାଳି ଲୋକଟାର ମରିବା ବିଷୟରେ ସେ ଚନ୍ଦନ୍‌ଙ୍କ ରିପୋର୍ଟ ପାଇଲେ ସେ ଠିକ୍ କରିନେଲେ ଯେ ଦନ୍ତା ହାତୀଟାକୁ ଆଉ ବେଶି ଦୟା ଦେଖାଇବା ଉଚିତ ହେବନାହିଁ । ତା'ର ସ୍ୱଭାବ ବଦଳାଇବା ପାଇଁ ତାକୁ ବହୁତ ସମୟ ଦିଆ ହୋଇ ସାରିଲାଣି । ତେଣୁ ସେ ବିଷୟରେ ଆଉ କିଛି ନ ଭାବି ଛଦାଦାନ୍ତ ହାତୀଟାକୁ ଗୁଳି କରି ମାରି ଦିଆଯାଉ ବୋଲି ସରକାରଙ୍କର ଅନୁମତି ଲୋଡ଼ିଲେ । ବନ୍ୟଜନ୍ତୁଙ୍କୁ ରକ୍ଷା କରିବାର ଯେଉଁ ଆଇନ୍ ଅଛି ସେ ଦୃଷ୍ଟିରୁ ଏପ୍ରକାର ଅନୁମତି ଲୋଡ଼ିବା ଦରକାର ପଡ଼ିଲା । ଏହି ଆଇନ୍ ଅନୁସାରେ ବଣୁଆ ହାତୀମାନେ ସବୁ ରକମର ସାହାଯ୍ୟ ଓ ସୁରକ୍ଷା ଉପଭୋଗ କରିବା କଥା । ଆଇନ୍ ଅନୁସାରେ, ସେମାନଙ୍କର କେହି କୌଣସି କ୍ଷତି କରିପାରିବେ ନାହିଁ । ଅଭୟାରଣ୍ୟରେ ରହୁଥିବା ପଶୁମାନଙ୍କର ସୁରକ୍ଷା ପାଇଁ ସରକାରଙ୍କ ଅନୁମତି ଲୋଡ଼ିବା ଆହୁରି ବେଶି ଦରକାର ପଡ଼ିଲା ।

ରିପୋର୍ଟ ପଠାଇ ସାରିବା ପରେ ପରିଚାଳକ, ଚନ୍ଦନ୍ ପରିସ୍ଥିତିକୁ ଭଲ କରି ଭାବି ଦେଖିଲେ । ଛଦାଦାନ୍ତ ହାତୀଟା ଅଭୟାରଣ୍ୟ ଭିତରକୁ ନୂଆ ଆସି ନାହିଁ । ପୂର୍ବେ ସେ କେତେ ଥର ପାଖ ଆଖରେ ଥିବା ଚାଷ ଜମିରେ ପଶି ନାନା ଉତ୍ପାତ କରିଥିଲା । ଜମିରେ ଯେତେବେଳେ ଫସଲ ନଥାଏ, ଏବଂ ଗାଁ ଲୋକେ ଯେତେବେଳେ ତାକୁ ହଇରାଣ କରନ୍ତି, ଚିଡ଼ାନ୍ତି, ହାତୀଟା ଅଭୟାରଣ୍ୟ ଭିତରକୁ ପଶିଆସେ । ଅଭୟାରଣ୍ୟରେ ସେ ବେଶ୍ ଭଲ ବ୍ୟବହାର ଦେଖାଉଥିଲା । କେବଳ କେହି ଲୋକ ଯଦି ତା'ର ଖୁବ୍ ପାଖକୁ ଚାଲିଆସେ ବା ତା'କୁ ବିରକ୍ତ କରେ ତେବେ ସେ ରାଗିଯାଉ-ଥିଲା । ସେ ଏମିତି ରାଗିଯିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ, କାରଣ ଲୋକେ ଅନେକ ସମୟରେ ତା' ଉପରକୁ ପଥର ଫିଙ୍ଗୁଥିଲେ, ବାଡ଼ି, ଫୋଟକା ବାଣ ଓ ନିଆଁ ହୁଳା ଫିଙ୍ଗୁଥିଲେ, ଏପରିକି ହାତୀଟା ଯଦି ଫସଲ ଜମିରେ ପଶେ ତାକୁ ଦେଶୀ ବନ୍ଧୁକ ଫୁଟାଇ ଘଉଡ଼ାଇ ଦେଉଥିଲେ । କିନ୍ତୁ ହାତୀଟା କେବେ କାହାର କିଛି କ୍ଷତି କରି ନ ଥିଲା । ଏଇଥର କେବଳ ଯୋଉ ଅଭୟାରଣ୍ୟକୁ ପଶି ଆସିଥିଲା ସେ ଲୋକଙ୍କୁ ଦେଖିଲେ ଗୋଡ଼ାଉଥିଲା । ସେ ସର୍ବମୋଟ ତିନିଜଣ ଲୋକଙ୍କୁ ମାରି ସାରିଥିଲା, ଅଭୟାରଣ୍ୟ ଭିତରକୁ ଆସିବା ଆଗରୁ ବାହାରେ ଦୁଇଜଣଙ୍କୁ ଏବଂ ତା'ପରେ ଅଭୟାରଣ୍ୟ ଭିତରେ ସେଇ କାଠ ଗୋଟାଳି ଲୋକଟାକୁ ।

"ସାର୍, ମୁଁ ଭାବୁଛି ହାତୀଟାର ଦାନ୍ତ ଯୋଡ଼ାକ ଏମିତି ବିଚିତ୍ର ଭାବରେ ରହିଥିବାରୁ ବୋଧେ ସେ ଏତେ ଉତ୍ପାତ ହେଉଛି ।" ଜଙ୍ଗଲ

ଅଧିକାରୀ ମୋହିଦୀନ୍ କହିଲେ ।

"ଆପଣ ଏକଥା କାହିଁକି ଭାବିଲେ ?" ଚନ୍ଦନ୍ ପଚାରିଲେ ।

"କାହିଁକି ନା, ଅନ୍ୟ ହାତୀଙ୍କ ଭଳି ସେ ତା'ର ଶୁଣ୍ଢକୁ ଇଚ୍ଛା ଅନୁସାରେ ବ୍ୟବହାର କରି ପାରୁନି, ବିରକ୍ତ ହୋଇ ଯାଉଛି, ରାଗି ଯାଉଛି, ଆଉ ଲୋକଙ୍କ ଉପରେ ହାତ ସାଧୁଛି ।" ମୋହିଦୀନ୍ ଉତ୍ତର ଦେଲେ ।

"ତା' ଯଦି ହୋଇଥାନ୍ତା ତେବେ ତ ସେ ଅନେକ ଆଗରୁ ଲୋକଙ୍କୁ ମାରିବା ଆରମ୍ଭ କରି ସାରନ୍ତାଣି । ଏବେ କାହିଁକି ଏମିତି କରୁଛି ?" ଚନ୍ଦନ୍ ମୋହିଦୀନ୍‌ଙ୍କ କଥା ମୋଟେ ବିଶ୍ୱାସ କଲେ ନାହିଁ, କିନ୍ତୁ ତାଙ୍କର ସନ୍ଦେହ ବଢ଼ିବାରେ ଲାଗିଲା ଏବଂ ସେ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲେ ।

ପୁରୁଷ ହାତୀ ଉତ୍ପାତ ହେବାର ଗୋଟିଏ କାରଣ ହେଲା ସେ ମସ୍ତ୍ ହୋଇଯାଏ (ତା' ଦେହ ଖୁବ୍ ଗରମ ହୋଇଯାଏ) । ବେଳେ ବେଳେ ଲୋକେ ଏୟା ଭାବନ୍ତି । ସ୍ତ୍ରୀ ହାତୀମାନଙ୍କ ସାଙ୍ଗରେ ମିଳାମିଶା କରିବାର



ବେଳ ଆସିଗଲେ ପୁରୁଷ ହାତୀ ଗୁଡାକ ମସ୍ତ ହୋଇଯାନ୍ତି ବୋଲି କୁହା-ଯାଏ । ମସ୍ତ ହୋଇଗଲେ ହାତୀ ସବୁବେଳେ ରାଗିକରି ଥାଏ ଏବଂ ଟିକକରେ ଚିଡ଼ିଯାଏ । ଏପରି ଅବସ୍ଥାକୁ କିନ୍ତୁ ଜାଣିବା ଖୁବ୍ ସହଜ, କାରଣ ହାତୀର ଆଖି ଓ କାନ ମଝିରେ କେତେ ଗୁଡ଼ିଏ ଶିରା ଥାଏ, ମୁଣ୍ଡର ଦୁଇ କଡେ, ସେଗୁଡ଼ିକ ଫାଟିଯାଇ ସେଥିରୁ ଗୋଟାଏ ରକମର ତେଲିଆ ରସ ବୁହେ ଓ ହାତୀର ଗାଲସାରା ବୋଳି ହୋଇଯାଏ । ଜଙ୍ଗଲ ବିଭାଗର କୌଣସି କର୍ମଚାରୀ ହାତୀଟାକୁ ଭଲ କରି ଦେଖି ନ ଥାନ୍ତି, ସେ ମସ୍ତ ହୋଇଛି କି ନାହିଁ ଜାଣି ନ ଥାନ୍ତି । ହାତୀଟା ଲୋକଙ୍କୁ ମାରିବା ଆରମ୍ଭ କଲା ପରେ ମଧ୍ୟ କେହି ଏଥି ପ୍ରତି ନଜର ଦେଇ ନ ଥିଲେ ।

ହାତୀଙ୍କୁ ରୋଗ ହେଲେ କିମ୍ବା ଦେହରେ କେଉଁଠି ଘାଣ୍ଠିଆ ହୋଇ-ଗଲେ ମଧ୍ୟ ସେମାନେ ଖରାପ ବ୍ୟବହାର ଦେଖାନ୍ତି । କିନ୍ତୁ ଏ ରକମର ଅବସ୍ଥା ଅଳ୍ପ ଦିନ ରହେ । ଭଦାଦାନ୍ତ ହାତୀଟା ଏ ସବୁ ମଧ୍ୟରୁ କୌଣସି ଗୋଟାଏ କାରଣ ଯୋଗୁଁ ମାରଣା ହୋଇ ଯାଇଥିଲା ।

ଦନ୍ତା ହାତୀଟାର ପ୍ରକୃତରେ କ'ଣ ହୋଇଛି, ଏ ଅବସ୍ଥା କେତେଦିନ ରହିବ, ଜଣା ପଡ଼ିବ କେବଳ କିଛି ଦିନ ଅପେକ୍ଷା କଲେ । ଚନ୍ଦନ୍ ସବୁ ରକମର ପଶୁପକ୍ଷୀଙ୍କୁ ଭଲ ପାଆନ୍ତି ଏବଂ ସମସ୍ତଙ୍କର ଖୁବ୍ ହେପାଜତ୍ କରନ୍ତି । ଭଦାଦାନ୍ତ ହାତୀଟା ବିଷୟରେ ସେ ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ । ତାକୁ ହଠାତ୍ ଦଣ୍ଡ ନ ଦେଇ କିଛି ଦିନ ଅପେକ୍ଷା କରିବାକୁ ଓ ହାତୀଟାର ବ୍ୟବହାର ପ୍ରତି ଲକ୍ଷ୍ୟ ରଖିବାକୁ ସେ ଠିକ୍ କଲେ ।

ତେଣୁ ସେ ଅଭୟାରଣ୍ୟମାନଙ୍କର ମୁଖ୍ୟଙ୍କୁ ଲେଖିଲେ ଯେ ହାତୀଟାକୁ ଏଥରକ ପାଇଁ କ୍ଷମା ଦିଆଯାଉ ଏବଂ ତାକୁ ମାରିଦେବା ପାଇଁ ଆଉ ଗୋଟିଏ ସପ୍ତାହ ଅନ୍ତତଃ ଅପେକ୍ଷା କରାଯାଉ । ଏ ଭିତରେ ହାତୀଟାକୁ ମାରିଦେବା ଲାଗି ସରକାରୀ ଆଦେଶ ଆସି ଯାଇଥାଏ । ଅଭୟାରଣ୍ୟ-ମାନଙ୍କର ମୁଖ୍ୟ ପରିଚାଳକ ଚନ୍ଦନ୍ଙ୍କ ଆନ୍ତରିକତା ବୁଝିପାରି ତାଙ୍କର ଅନୁରୋଧକୁ ସୁପାରିଶ କରିଦେଲେ । ସରକାରୀ ଆଦେଶକୁ କାର୍ଯ୍ୟକାରୀ କରିବାର ସମୟ ସେ ଗୋଟିଏ ସପ୍ତାହ ଘୁଞ୍ଚାଇ ଦେଲେ । କିନ୍ତୁ ଗୋଟିଏ ସର୍ତ୍ତରେ । ସର୍ତ୍ତଟି ହେଲା,ସପ୍ତାହକରୁ ଅଧିକ ସମୟ ଯେମିତି ଅପେକ୍ଷା କରା ନ ଯାଏ ।

ଦନ୍ତା ହାତୀଟାକୁ ମାରିବା ଲାଗି ସପ୍ତାହେ ସମୟ ମିଳିଯିବା ପରେ ଅଭୟାରଣ୍ୟ ପରିଚାଳକ ଭାବିଲେ ଯେ ଆଉ ଟିକିଏ ବେଶୀ ସମୟ ମାଗିଥିଲେ ଭଲ ହୋଇଥାନ୍ତା । ସପ୍ତାହେ ଯଥେଷ୍ଟ ହେବ କି ନାହିଁ ବୋଲି

ସେ ଭାବିବାରେ ଲାଗିଲେ । ତେବେ, ସେ ଯଦି ଆଉ ବେଶି ସମୟ ପାଇଥାନ୍ତେ ଏବଂ ଦନ୍ତା ହାତୀଟା ତା' ବାଟରେ ସେମିତି ଉତ୍ପାତ ହୋଇଥାନ୍ତା, ତାହା ହେଲେ ତାଙ୍କୁ ହିଁ ସମସ୍ତେ ଦୋଷ ଦିଅନ୍ତେ । ସେଥିପାଇଁ ସେ ସପ୍ତାହକର୍ ଅଧିକ ସମୟ ନ ମାଗିବାକୁ ଠିକ୍ କଲେ । ହାତରେ ସମୟ କମ୍, ତାଙ୍କର ଯାହା କରିବା କଥା ଶୀଘ୍ର ଶୀଘ୍ର କରିବାକୁ ପଡ଼ିବ ।

ଚନ୍ଦନ୍ ଦେଖିଲେ ଯେ ଭବିଷ୍ୟତର ଯୋଜନା କରିବା ଆଗରୁ ସେ ମାରଣା ହାତୀଟାକୁ ଭଲ ଭାବରେ ଟିକିଏ ଲକ୍ଷ୍ୟ କରିନେବା ଦରକାର । ଅଭୟାରଣ୍ୟ ମୁଖ୍ୟଙ୍କ ଚିଠି ପାଇବା ଦିନ ହିଁ ହାତୀଟାର ଖୋଜ ନେବା ପାଇଁ ସେ ତାଙ୍କର ଲୋକମାନଙ୍କୁ ପଠାଇ ଦେଲେ । ସେମାନେ ଠିକ୍ ତା' ଆଗରୁ ଯେଉଁଠି ହାତୀଟାକୁ ଦେଖିଥିଲେ ସେହି ଜାଗାରୁ ଖୋଜ ନେବା ଆରମ୍ଭ କରିବେ । ଦନ୍ତା ହାତୀଟାକୁ ଠାବ କରିବା ବେଶି କଷ୍ଟ ହେଲା ନାହିଁ, କାରଣ ଯେପାଏଁ ସେ ଅଭୟାରଣ୍ୟ ଛାଡ଼ି ଚାଲିଯାଇ ନ ଥିଲା । ଖୋଜ ନେବାକୁ ଯାଇଥିବା ଲୋକମାନେ ସଞ୍ଜବେଳେ ଫେରି ଆସିଲେ ଏବଂ ହାତୀଟା କେଉଁଠି ମିଳିବ ସେ ଖବର ଦେଇ ଦେଲେ ।

## 2

ତା' ପରଦିନ ସକାଳେ ଚନ୍ଦନ୍ ତାଙ୍କ ପୁଅ ମୋହନ ଓ ଜଗୁଆଳି ଆଲଗିରିକୁ ଧରି ବାହାରି ପଡ଼ିଲେ । ସେ ଚାହୁଁଥିଲେ ଦନ୍ତା ହାତୀଟାର ବ୍ୟବହାର ଆଉ ଟିକିଏ ଲକ୍ଷ୍ୟ କରିବାକୁ । ବାଇନୋକୁଲାର୍ ତ ନେଇଥିଲେ, ତା' ସାଙ୍ଗରେ ଚନ୍ଦନ୍ ତାଙ୍କ ବଡ଼ ବନ୍ଧୁକଟା ମଧ୍ୟ ଧରିଥିଲେ, କାଳେ ହାତୀଟା ରାଗିଯାଇ ଉତ୍ପାତ ହେବ । ସେ ଠିକ୍ କରିଥିଲେ ଯେ ଗୋଟିଏ ନିରାପଦ ଜାଗାରେ ରହି ହାତୀଟାକୁ ଲକ୍ଷ୍ୟ କରିବେ । ଅନ୍ୟ ବେଳେ ସେ ମୋହନକୁ ସାଙ୍ଗରେ ନେଇ ନ ଥାନ୍ତେ । କିନ୍ତୁ ଏଥର ସେ ନେଲେ କାରଣ ତାଙ୍କର ବିଶ୍ୱାସ ହୋଇ ଯାଇଥିଲା ଯେ ମୋହନର ଜୁକଲ୍ ଜଙ୍ଗଲ ବିଷୟରେ ବେଶ୍ ଧାରଣା ହୋଇ ସାରିଛି ଏବଂ ହଠାତ୍ ଯଦି ସେ ମାରଣା ହାତୀର ହାବୁଡ଼ରେ ପଡ଼ିଯାଏ, କେମିତି ହେଲେ ଖସି ଯାଇ ପାରିବ ।

ପରିଚାଳକଙ୍କ ଦଳ ହାତୀଟାକୁ ବହୁ ଦୂରରୁ ଠାବ କରିନେଲେ । ଗୋଟିଏ ପାହାଡ଼ କଡ଼ରେ ହାତୀଟା କ'ଣ ଖାଉଥିଲା । ଦୂରରୁ ହେଲେ ମଧ୍ୟ ସେମାନେ ହାତୀଟାକୁ ଭଲ ଭାବରେ ଦେଖି ପାରୁଥିଲେ, ଏବଂ ଆଖିରେ ବାଇନୋକୁଲାର ଲଗାଇ ସେମାନେ ହାତୀଟା ଉପରେ ଲକ୍ଷ୍ୟ ରଖିଲେ ।



ସେମାନେ ଦେଖିଲେ ଯେ ହାତୀଟା ତା' ଶୁଣ୍ଢକୁ ସହଜରେ ବ୍ୟବହାର କରି ପାରୁ ନାହିଁ । ସେଠି ଥିବା ଗଛର ଡାଳ ଓ ବାଉଁଶମାନଙ୍କୁ ଛୋଟ ହାତୀ-ମାନଙ୍କର ଶୁଣ୍ଢ ପାଇଯିବ, କିନ୍ତୁ ଏ ଦଣ୍ତା ହାତୀଟା ଶୁଣ୍ଢ ବଢ଼ାଇ ପାରୁ ନ ଥାଏ । ଏପରିକି ଛୋଟ ଛୋଟ ଗଛର ଡାଳ ଖାଇବା ପାଇଁ ମଧ୍ୟ ହାତୀଟାକୁ ତା' ମୁଣ୍ଡକୁ ବେଶ୍ ଉଚ୍ଚକୁ ଟେକିବାକୁ ପଡ଼ୁଥିଲା ଏବଂ ବେକକୁ ଲମ୍ୱାଇବାକୁ ପଡ଼ୁଥିଲା । ବେଳେବେଳେ ବଡ କଷ୍ଟ କରି ହାତୀଟା ଦୁଇ ଦାନ୍ତର ଛନ୍ଦାଛନ୍ଦି ଭିତରୁ ଶୁଣ୍ଢଟାକୁ ବାହାର କରି ଆଣୁ-

ଥିଲା, ବୋଧେ ଭାବୁଥିଲା ଯେ ଏମିତି କଲେ ସେ ସହଜରେ ତାଳ ପତ୍ର ଖାଇ ପାରିବ । ତେବେ, ହାତୀଟା ଦେଖିଲା ଯେ ତାଳ ପତ୍ର ପାଟିରେ ଆଣି ଭର୍ତ୍ତି କଲାବେଳକୁ ଦାନ୍ତ ଯୋଡ଼ାକ ବଡ଼ ଅସୁବିଧା କରୁଛନ୍ତି । ଅନ୍ୟ ଦନ୍ତା ହାତୀମାନେ ତାଙ୍କର ଦାନ୍ତରେ ଯେଉଁ କାମ ସହଜରେ କରି ପାରୁଥିଲେ, ଏ ହାତୀଟା ତାହା କରି ପାରୁ ନ ଥିଲା—ଯେମିତିକି ଗଛରୁ ଛାଲି ବାହାର କରିନେବା । ଗୋଟାଏ ପଶୁ ପାଇଁ ଏ ପ୍ରକାର ଅସୁବିଧା ବଡ଼ କଷ୍ଟ ଦେବ । ବୋଧେ ଏଇଥି ଲାଗି ହାତୀଟା ଫସଲ ଜମିରେ ପଶି ଫସଲ ଖାଇ ଯିବାକୁ ବେଶି ସହଜ ମନେ କରୁଥିଲା । ଅଭୟାରଣ୍ୟ ପରିଚାଳକ ଏହା ହିଁ ଭାବିଲେ ।

ଦନ୍ତା ହାତୀଟାର ଦାନ୍ତ ଯୋଡ଼ାକ ଏମିତି ବିଚିତ୍ର ଭାବରେ ଛନ୍ଦି ହୋଇ ରହିଥିବାରୁ ତା'ର ବଡ଼ ଅସୁବିଧା ହେଉଥିଲା । କିନ୍ତୁ ଖାଲି କ'ଣ ଏଇଥି ପାଇଁ ହାତୀଟା ଏତେ ଉତ୍ପାତ ହେଉଛି ? ପରିଚାଳକ ହାତୀଟାକୁ ଆଉ କିଛି ସମୟ ଲକ୍ଷ୍ୟ କରିବାକୁ ଠିକ୍ କଲେ ।

ଖରା ବଢୁଥାଏ । ହାତୀଟା ଏଥର ଖାଇବା ବନ୍ଦ କରିବ ଏବଂ ପାଣି ପିଇବାକୁ ଯିବ । ନେଲ୍ଲି ଓଡ଼ାଇ ବେଶି ଦୂର ନୁହେଁ । ପରିଚାଳକ ଅନୁମାନ କରିନେଲେ ଯେ ହାତୀଟା ଏଥର ଶୁଖିଲା ନଈର ସବୁଠୁ ପାଖ ଚୂଆ ଆଡ଼କୁ ମୁହାଁଇବ । ତାହେଲେ ହାତୀଟାକୁ ଆହୁରି ପାଖରୁ ଲକ୍ଷ୍ୟ କରିବାର ସୁଯୋଗ ମିଳିବ । ଚନ୍ଦନ୍ ଜଗୁଆଳି ସାଙ୍ଗରେ ଆଲୋଚନା କଲେ । ଉଭୟେ ଭାବି ଠିକ୍ ଜାଣିନେଲେ ହାତୀଟା କେଉଁ ବାଟ ଦେଇ ଯିବ ।

ସବାଆଗରେ ପରିଚାଳକ ଚାଲିଥାନ୍ତି । ତିନି ଜଣ ଯାକ ଜଙ୍ଗଲ ଭିତରେ ପଶି ଚୁପ୍‌ଚାପ୍ ହୋଇ ଜୋର୍‌ରେ ଚାଲିବାକୁ ଲାଗିଲେ । ଅଳ୍ପ ସମୟ ଭିତରେ ସେମାନେ ଆଗରୁ ଠିକ୍ କରିଥିବା ଜାଗାଟାରେ ପହଞ୍ଚିଗଲେ । ସେଠି ସେମାନେ ଗୋଟାଏ ଉଁଚା ପଥର ଦେଖିଲେ । ତା' ଉପରକୁ ହାତୀଟାର ଶୁଣ୍ଢ ପାଇବ ନାହିଁ । ପଥରଟାର ତିନିପାଖ ଏତେ ସିଧା ଯେ ଚଢ଼ିବା କଷ୍ଟ । କେବଳ ଗୋଟିଏ ପାଖ ତଳକୁ ଟିକିଏ ଲମ୍ବି ଆସିଥିଲା । ଗଡ଼ାଣିଆ ପାଖର ଫାଟଗୁଡ଼ାକରେ ପାଦ ରଖି ରଖି ସେମାନେ ବଡ଼ କଷ୍ଟରେ ପଥରଟା ଉପରକୁ ଚଢ଼ିଗଲେ । ପଥର ଉପରେ ଥିବା ଟିକିଏ ଖାଲୁଆ ଜାଗାରେ କିଛି ଗଛ ପତ୍ର ଉଠିଥିଲା । ତା' ପଛରେ ଲୁଚି ବସିବାକୁ ବେଶ୍ ସୁବିଧା ହେଲା । ସେଠି ସେମାନେ ବସି ଅପେକ୍ଷା କଲେ ।

ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ପଥର କଡ଼ ଦେଇ ଚାଲି ଯାଇଥିବା ଜନ୍ତୁ ଜନ୍ତା ଯିବା ଆସିବା କରିବା ବାଟରେ ଗୋଟାଏ ପଶୁ ଆସୁଥିବା ଶବ୍ଦ ସେମାନେ ଶୁଣିଲେ । ଅଳ୍ପ ସମୟ ପରେ ଯେ ଦେଖାଗଲା । ହଁ, ପଶୁଟା ଆଉ କେହି ନୁହେଁ, ସେହି ଉଦାଦାନ୍ତ ହାତୀଟା । ସେ ଧୀରେ ଧୀରେ ଚାଲିଥାଏ, ଟିକିଏ ଛୋଟୋଉଥାଏ ଏବଂ ବୋଧେ ତା'କୁ କୌଣସି ପ୍ରକାରର କଷ୍ଟ ହେଉଥାଏ । ହାତୀଟା ମସ୍ତ୍ ଅବସ୍ଥାରେ ନାହିଁ ବୋଲି ଜଣା ପଡ଼ିଲା । ଦନ୍ତା ହାତୀଟା ପଥର ପାଖ ଦେଇ ଚାଲି ଯାଉଛି ତା'



ନାକ ମଣିଷର ଗନ୍ଧ ବାରିପାରିଲା । ସେମାନେ ଏତେ ପାଖରେ ଥିଲେ ଯେ ସେମାନଙ୍କ ଦେହର ଗନ୍ଧ ହାତୀର ନାକରେ ଖୁବ୍ ଜୋରରେ ବାଜୁଥିବ । ସେହିକ୍ଷଣି ହାତୀର ମୁଣ୍ଡ ବିଗିଡ଼ି ଗଲା । ସେ ସାଏଁ କିନା ବୁଲିପଡ଼ି ମାଡ଼ି ଆସିଲା । ଯେତେବେଳେ ଦେଖିଲା ଯେ ମଣିଷଗୁଡ଼ାକ ତା' ହାତ ପାଆନ୍ତାରେ ନାହାଁନ୍ତି, ସେତେବେଳେ ହାତୀଟା ଗୋଟେ ଗୋଡ଼ ପଥର ଉପରେ ଥୋଇ ଆଗକୁ ଉହୁଁକି ଆସିଲା ଓ ତା' ଶୁଣ୍ଢକୁ ଯେତେ ଦୂର ପାରେ ଲମ୍ବାଇବାକୁ ଚେଷ୍ଟା କଲା । ଚନ୍ଦନ୍ ଓ ତାଙ୍କର ଦୁଇ ସାଥୀ କିଛି ସମୟ ପାଇଁ ବେଶ୍ ଡରିଗଲେ । ତା' ଶୁଣ୍ଢଟା କ'ଣ ସତରେ ପାଇଯିବ ? ସେମାନେ ଭାବୁଥାନ୍ତି । କିନ୍ତୁ ଦନ୍ତା ହାତୀଟା ହାରିଗଲା । ଏଥିରେ ସେ ଆହୁରି ବେଶି ରାଗିଗଲା । ରାଗରେ ଚିର୍‌ଚିଷ ପାଟି କରି ସେ ପଥର ଚାରିପଟେ ବୁଲିବାକୁ ଲାଗିଲା ଏବଂ ବାଟର ଡାଳପତ୍ର ଛିଣ୍ଡାଇ ଛିନ୍‌ଛତ୍ର କରି ପକାଇଲା ।

ମୋହନ ଜାଗାରେ ଆଉ କେଉଁ ପିଲା ଥିଲେ ସେ ଡରରେ ତଳକୁ ଗଡ଼ି ପଡ଼ିଥାନ୍ତା । କିନ୍ତୁ ମୋହନ ଧୀରସ୍ଥିର ହୋଇ ବସିଥାଏ । ରାଗରେ ଗର୍ଜୁଥିବା ହାତୀଟାକୁ ସେ ଲକ୍ଷ୍ୟ କରୁଥାଏ । ସେ ଏମିତି ଗୋଟାଏ ଜିନିଷ ଦେଖିଲା ଯାହାକି ଅନ୍ୟମାନେ ଦେଖି ପାରି ନ ଥିଲେ । ହାତୀଟାର ବେକରେ ଗୋଟେ ବଡ଼ ଆବୁ ଉଠିଥିଲା, ଯେଉଟା ତା' କାନ ତଳେ କିଛିଟା ଘୋଡ଼ାଇ ହୋଇ ଯାଇଥାଏ । ମୋହନ ସେ ଆବୁଟାକୁ ତା' ବାପାଙ୍କୁ ଦେଖାଇଲା । ପରିବ୍ରାଜକ ଯେଉଟା ପ୍ରକୃତରେ କ'ଣ ସେକ୍ଷଣି ଜାଣି ପାରିଲେ । ଯେଉଟା ଥିଲା ଗୋଟେ ପୂଜ ଭର୍ତ୍ତି ବଡ଼ ଘା' । ତାଙ୍କ ପ୍ରଶ୍ନର ଉତ୍ତର ସେ ବର୍ତ୍ତମାନ ପାଇଗଲେ । ତାଙ୍କର ଆଉ କୌଣସି ସନ୍ଦେହ ରହିଲା ନାହିଁ । ଦନ୍ତା ହାତୀଟା ଏତେ ବେଶି ଉତ୍ପାତ କରିବାର କାରଣ ସେହି କଷ୍ଟ ଦେଉଥିବା ଘା'ଟା । ପ୍ରକୃତରେ ତା'ର ଛନ୍ଦାଛନ୍ଦି ହୋଇ ରହିଥିବା ଦାନ୍ତ ଯୋଗୁଁ ସେ ମାରଣା ହୋଇ ଯାଇ ନ ଥିଲା । ଘା'ଟା ଯୋଗୁଁ ହାତୀଟା ମଧ୍ୟ ବେଶି ଜୋର୍‌ରେ ଦୌଡ଼ି ପାରୁ ନ ଥିଲା । ଫଳରେ ତା' ହାବୁଡ଼ରେ ପଡ଼ି ଯାଉଥିବା ଲୋକେ ସହଜରେ ଖସି ଯାଉଥିଲେ । ନ ହେଲେ ଆହୁରି କେତେ ଲୋକ ମରି ସାରନ୍ତେଣି ।

ଦନ୍ତା ହାତୀଟା ପଥର ପାଖରେ ବେଶି ସମୟ ଜଗି ରହି ପାରିଲା ନାହିଁ । ଭାରି ଖରା ହେଉଥାଏ ଏବଂ ହାତୀଟା ହାଲିଆ ହୋଇ ଯାଉଥାଏ । ଶେଷରେ ତାକୁ ଏତେ ଜୋର୍‌ରେ ଶୋଷ କଲା ଯେ ସେ ଜାଗା ଛାଡ଼ି ପଳାଇଗଲା ।

# 3

ଜଙ୍ଗଲରୁ ଫେରିବା କ୍ଷଣି ଅଭୟାରଣ୍ୟ ପରିଚାଳକ ତାଙ୍କର ବନ୍ଧୁ ପଶୁଡାକ୍ତର, ରମେଶଙ୍କ ପାଖକୁ ଗୋଟିଏ ଜରୁରୀ ତାରବାର୍ତ୍ତା। (ଟେଲିଗ୍ରାମ୍) ପଠାଇଲେ। ସେ ଯେମିତି ଶୀଘ୍ର ଆସି ପହଞ୍ଚନ୍ତି। ଡାକ୍ତର, ରମେଶ ଜଙ୍ଗଲ ବିଭାଗରେ କାମ କରନ୍ତି। ତା' ପରଦିନ ସନ୍ଧ୍ୟାରେ ସେ ଆସି ପହଞ୍ଚିଲେ ଏବଂ ସିଧା ପରିଚାଳକ, ଚନ୍ଦନ୍‌ଙ୍କ ଘରକୁ ଗଲେ। ସେ ଆସିଲେ ସାଧା ତାଙ୍କ ପାଖରେ ରହନ୍ତି। ଖ' ଖାଇଲା ବେଳେ ଚନ୍ଦନ୍ ହାତୀଟା ବିଷୟରେ ସବୁ କଥା ଡାକ୍ତର ରମେଶଙ୍କୁ ଜଣାଇଲେ। ତା' ପରେ ବର୍ତ୍ତମାନ କ'ଣ କ'ଣ କରିବାକୁ ହେବ ସେ କଥା ପଶୁଡାକ୍ତରଙ୍କୁ କହିଲେ।

"ତମେ ଜାଣିଛ, ସରକାର ମତେ ଗୋଟିଏ ଟ୍ରାଙ୍କୁଲାଇଜର୍ ଗନ୍ (ଏକ ରକମର ବନ୍ଧୁକ ଯେଉଁଥିରେ ଲାଗିଲେ ଜନ୍ତୁ ମରିବ ନାହିଁ କିନ୍ତୁ ମୂର୍ଚ୍ଛା ହୋଇଯିବ) ଦେଇଛନ୍ତି। ମୁଁ ଭାବୁଛି ହାତୀଟାକୁ ସେଥିରେ ଲାଗି ଦେବି। ତେବେ, ହାତୀଟା ମୂର୍ଚ୍ଛା ହୋଇ ପଡ଼ିଗଲା ପରେ ତା' ଘା'ଟାକୁ ଅପରେସନ୍ କରିବାକୁ ଯଦି ତମେ ରାଜି ହେବ।" ସେ ପୁଣି କହିଲେ, "ମତେ କାହିଁକି ଲାଗୁଛି, ଘା'ଟା ଶୁଖିଗଲେ, ବଥା କମିଗଲେ ହାତୀଟା ହୁଏତ ପୂର୍ବ ଭଳି ହୋଇଯିବ, ଆଉ ଉତ୍ପାତ ହେବ ନି।"

ଡାକ୍ତର ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ। ଏ ପ୍ରକାର ଅନୁରୋଧ ତାଙ୍କୁ ବଡ଼ ବିଚିତ୍ର ଲାଗିଲା। ସେ ଆଗରୁ କେବେ ବଣୁଆ ହାତୀଙ୍କର ଅପରେସନ୍ କରି ନ ଥିଲେ ଏବଂ ଦନ୍ତା ହାତୀଟା ପୁଣି ମାରଣା। କିନ୍ତୁ ତାଙ୍କର ଡର ଭୟକୁ ସେ ସେକ୍ଷଣି ଚାପି ଦେଲେ। ବିଷୟଟାକୁ ସେ ଅତି ସାବଧାନତାର ସହିତ ଚିନ୍ତା କଲେ। ଅବଶ୍ୟ ବିପଦ ଅଛି। କିନ୍ତୁ ତା' ସାଙ୍ଗରେ ଏକ ନୂଆ ପ୍ରକାର ଶିକାର କରିବାର ଉତ୍ତେଜନା ମଧ୍ୟ ଅଛି। ପଶୁଡାକ୍ତର ଜଙ୍ଗଲ ବିଭାଗ ପୋଷି ରଖିଥିବା ହାତୀମାନଙ୍କୁ କେବଳ ଆଗରୁ ଚିକିତ୍ସା କରିଥିଲେ। ସେମାନଙ୍କୁ ସେ ଭଲପା'ନ୍ତି। ଦନ୍ତା ହାତୀଟା ସେ ହାତୀମାନଙ୍କଠାରୁ ଆଉ ଅଲଗା ବା କ'ଣ? ଏମିତି ସେ ଭାବିଲେ। ଗୋଟିଏ ହାତୀର ଜୀବନ ରକ୍ଷା କରିବାର ସୁଯୋଗ ଆସିଛି। ସେ ମଧ୍ୟ ଜାଣିଥିଲେ ଯେ ଚନ୍ଦନ୍ ତାଙ୍କୁ କୌଣସି ବିପଦ ଆଡ଼କୁ ଠେଲି ଦେବେ ନାହିଁ। ସେ ବର୍ତ୍ତମାନ କ'ଣ କରିବେ ଠିକ୍ କରି ନେଲେ। ଚନ୍ଦନ୍‌ଙ୍କ କର ମର୍ଦ୍ଦନ କରି ହସି କହିଲେ, "ଠିକ୍ ଅଛି। ମୁଁ ସେୟା କରିବି।"

ମୋହନ ସେ ଦୁହିଙ୍କ କଥାବାର୍ତ୍ତା ଶୁଣୁଥାଏ । ତା' ମନରେ ଗୋଟିଏ ସନ୍ଦେହ ଉଙ୍କି ମାରିଲା । "ବାପା, ଧର, ଦନ୍ତା ହାତୀଟା ଯୋଉ ପଟେ ତା'ର ଘା' ହୋଇଛି ସେଇ ପଟେ ପଡ଼ିଗଲା; ତା' ହେଲେ କ'ଣ ହେବ ?"

"ଆରେ, ମୁଁ ତ ସେ କଥା ମୋଟେ ଭାବିନି," ତା ବାପା କହିଲେ । "ଥରେ ପଡ଼ିଗଲେ ଆମେ ଆଉ ତାକୁ ଓଲଟାଇ ପାରିବୁ ନାହିଁ । ଆମ ହାତରେ ଗୋଟେ ପୋଷା ହାତୀ ଅଛି କି ।" ସେ ଗୁଣୁ ଗୁଣୁ ହୋଇ କହିଲେ ।

"ମୁଁ ଭାବୁଛି ଯୋଉ ପଟ ହେଲେ ବି ଘା'ଟା ଆମ ହାତରେ ପଡ଼ିବ । ସେ ଯା' ହେଉ, ଯେତେ ଅସୁବିଧା ହେଉ, ଆମକୁ ଏଯା ହିଁ କରିବାକୁ ପଡ଼ିବ", ପଶୁଡାକ୍ତର ଚିନ୍ତିତ ସ୍ୱରରେ କହିଲେ ।

ପରିବ୍ରାଜକ ତାଙ୍କର ଟ୍ରାଙ୍କ୍ୱିଲାଇଜର୍ ଗନ୍ ବାହାର କଲେ । ସେଟାକୁ ସେ ମୂର୍ଚ୍ଛା ବନ୍ଧୁକ ବୋଲି କହନ୍ତି କାରଣ ସେଟା ଜନ୍ତୁମାନଙ୍କୁ କିଛି ସମୟ ପାଇଁ ମୂର୍ଚ୍ଛା କରି ଦିଏ । ସେଟାକୁ ଧର ପକଡ଼ ବନ୍ଧୁକ ମଧ୍ୟ କୁହାଯାଉଥିଲା । କାରଣ ଜନ୍ତୁମାନଙ୍କୁ ଧରିବା ପାଇଁ ପ୍ରାୟ ସେଟା ବ୍ୟବହାର କରାଯାଉଥିଲା । ଆଗରୁ ଚନ୍ଦନ୍ ଏକ ପ୍ରକାର ହରିଣମାନଙ୍କୁ ଧରିବା ପାଇଁ ସେଟାକୁ ବ୍ୟବହାର କରିଥିଲେ । ସେତେବେଳେ ତାଙ୍କୁ କୁହା ଯାଇଥିଲା ଯେ ଅଭୟାରଣ୍ୟରେ ସେ ପ୍ରକାର ଅନେକ ହରିଣ ଅଛନ୍ତି, ସେମାନଙ୍କ ଭିତରୁ କେତେକଙ୍କୁ ନେଇ ଆଉ ଗୋଟିଏ ଜଙ୍ଗଲରେ ଛାଡ଼ିବାକୁ ପଡ଼ିବ । ସେ ଜଙ୍ଗଲରେ ବହୁତ କମ୍ ହରିଣ ଥିଲେ । ଗୃହପାଳିତ ପଶୁମାନଙ୍କ ଉପରେ ମଧ୍ୟ ସେ ବନ୍ଧୁକକୁ ପରୀକ୍ଷା କରିଥିଲେ ସେ । ବନ୍ଧୁକ ଫୁଟାଇଲେ ମୂର୍ଚ୍ଛା କରି ଦେବା ପାଣି ଔଷଧ ଭର୍ତ୍ତି ଛୋଟ ଛୋଟ ଛୁଞ୍ଚି ବାହାରି ଯାଉଥିଲା । ପଶୁ ଦେହରେ ବାଜିଲେ ଛୁଞ୍ଚି ପୋତି ହୋଇ ଯାଉଥିଲା ଏବଂ ଔଷଧ ପ୍ରଭାବରେ କିଛି ସମୟ ପାଇଁ ତାକୁ ନିଦ ହୋଇ ଯାଉଥିଲା ।

ଯେଉଁ ଜନ୍ତୁକୁ ତମେ ଧରିବ ତା' ପାଇଁ ଠିକ୍ ହେଲା ଭଳି ପରିମାଣର ଔଷଧ ଛୁଞ୍ଚି ସୁତାକରେ ଭର୍ତ୍ତି କରିବା ନିହାତି ଆବଶ୍ୟକ । ଔଷଧର ପରିମାଣ ବେଶ ହୋଇଗଲେ ଜନ୍ତୁଟା ମରିଯାଇ ପାରେ, କମ ହେଲେ ତାହା ମୋଟେ କାମ ଦେବ ନାହିଁ । ରସାୟନିକ ପଦାର୍ଥମାନଙ୍କ ବିଷୟରେ ଡାକ୍ତର ରମେଶଙ୍କର ବେଶ୍ ଭଲ ଜ୍ଞାନ ଥିଲା । ସେ ଓ ଚନ୍ଦନ ଔଷଧ ସମ୍ପର୍କରେ ବହିପତ୍ର ଖୋଲାଇ ଦେଖିଲେ । ଅନ୍ୟ ଜନ୍ତୁଙ୍କ ଉପରେ

ଆଗରୁ କର ଯାଇଥିବା ପରୀକ୍ଷାର ଅନୁଭୂତି ତ ଥିଲା । ଦୁହେଁ ମିଶି ଭିନ୍ନ ଭିନ୍ନ ରକମର ରସାୟନିକ ପଦାର୍ଥ ମିଶାଇ ଔଷଧ ତିଆରି କରିନେଲେ । ଦନ୍ତା ଦାତୀଟା ଭଳି ଗୋଟାଏ ବିରଟ ଜନ୍ତୁ ପାଇଁ ଔଷଧ ଖୁବ୍ ବେଶି ପରିମାଣରେ ଏବଂ କଡା ହେବା ଦରକାର । ଖିଆପିଆ ସରିବା ପରେ ଦୁହେଁ ଅଧ ଡଜନେ ଗୁଳିରେ ଔଷଧ ଭର୍ତ୍ତି କଲେ, ବନ୍ଧୁକଟାକୁ ସଫା କଲେ ଏବଂ ତା'ର ଯନ୍ତ୍ରପାତି ଠିକ୍ ଅଛି କି ନାହିଁ ଦେଖିନେଲେ । ଏବଂ ତା'ପରେ ସେ ଦୁହେଁ ଶିକାରରେ ଯିବା ଲାଗି ସଜବାଜ ହୋଇଗଲେ ।



ତା' ପର ଦିନ ସକାଳେ—ସେତେବେଳକୁ ଅଭୟାରଣ୍ୟ ମୁଖ୍ୟଙ୍କ-ଠାରୁ ଚିଠି ଆସିବା ଚାରି ଦିନ ହେଲାଣି—କୁକ୍ରଲ୍ ଅଭୟାରଣ୍ୟ ପରିଚାଳକ ଓ ପଶୁଡାକ୍ତର ଦୁଇଜଣ ଲୋକଙ୍କୁ ଧରି ଶିକାରରେ ବାହାରି ପଡ଼ିଲେ । ଜଣେ ଲୋକ, ଅଭୟାରଣ୍ୟର ଜଣେ ଜଗୁଆଳି, ଡାକ୍ତରଙ୍କ ଔଷଧ ବ୍ୟାଗ୍ ଧରିଲା । ଅନ୍ୟ ଜଣକ ମଧ୍ୟ ଜଣେ ଜଗୁଆଳି, ତା'କୁ ଜନ୍ତୁମାନଙ୍କୁ ଚିହ୍ନା କରିବା ଖୁବ୍ ଭଲଭାବରେ ଜଣା । ଅଭୟାରଣ୍ୟରେ ରହୁଥିବା ଗିରିଜନ-ମାନଙ୍କ ଜାତିର ଲୋକ ସେ । ଶିକାରୀ ଦଳ ସକାଳୁ ପ୍ରାୟ ସନ୍ଧ୍ୟାବେଳ ଯାଏଁ ହାତୀଟାର ଖୋଜ କଲେ । ଶେଷରେ ସେମାନେ ତାକୁ ଠାବ କଲେ । ଗୋଟିଏ ଉପତ୍ୟକାର ଘଞ୍ଚ ଜଙ୍ଗଲରେ ହାତୀଟା ତାଳପତ୍ର ଖାଉଥାଏ ।

ପରିଚାଳକ ଚନ୍ଦନ୍ ତାଙ୍କ ମୂର୍ଚ୍ଛା କରିଦେବା ବନ୍ଧୁକର କି କି ଅସୁବିଧା ଜାଣିଥିଲେ । ଅନ୍ୟ ବନ୍ଧୁକ (ରାଇଫଲ୍) ଭଳି ସେଟା ବେଶି ଦୂରରୁ ଲାଗି ପାରିବ ନାହିଁ । ଠିକ୍ ବାଜିଲା ଭଳି ଲାଗିବାକୁ ହେଲେ ତାଙ୍କୁ ଜନ୍ତୁଟା ଠାରୁ ପଚିଶ ମିଟର୍ ଭିତରେ ରହିବାକୁ ପଡ଼ିବ । ପୁଣି ଗୁଳି ଅପେକ୍ଷା ଔଷଧ ଚୁଞ୍ଚି କାମ ଦେଖାଇଲା ବେଳକୁ ବେଶି ସମୟ ଲାଗିବ । ତେଣୁ ଲାଗିବାର ସମୟ ଓ ସ୍ଥାନ ଖୁବ୍ ସାବଧାନତାର ସହିତ ଠିକ୍ କରିବାକୁ ପଡ଼ିବ । ଯେଉଁ ଉପତ୍ୟକା ଭିତରେ ହାତୀଟା ତାଳ ପତ୍ର ଖାଉଥିଲା ସେଟା ଲାଗିବା ପାଇଁ ମୋଟେ ସୁବିଧା ଜାଗା ନୁହେଁ, ପୁଣି ପବନ ବୋହିବା କେତେବେଳେ କମି ଯାଉଥାଏ ତ କେତେବେଳେ ବଢ଼ି ଯାଉଥାଏ । ହାତୀଟା ସେ ଜାଗାରୁ ବାହାରି ଆସିବା ପାଇଁ ଶିକାରୀ ଦଳ ଧୈର୍ଯ୍ୟର ସହିତ ଅପେକ୍ଷା କଲେ । କିନ୍ତୁ ହାତୀଟା ବାହାରିବା ପାଇଁ ବହୁତ ଡେରି କଲା, କାରଣ ସେ ଅଳ୍ପ କେତେ ଘଣ୍ଟା ଆଗରୁ ପାଣି ପିଇ-ସାରିଥିଲା । ଏଣେ ସନ୍ଧ୍ୟା ହୋଇ ଆସୁଛି । ଶିକାରୀଦଳ ଠିକ୍ କଲେ ଯେ ବାହୁଡ଼ି ଯିବେ ।

ତା' ପରଦିନ ଶିକାରୀଦଳ ତାଙ୍କର କୌଶଳ ବଦଳାଇ ଦେଲେ । ଅଭୟାରଣ୍ୟ ପରିଚାଳକ ଯେଉଁ ପଥର ଉପରେ ବସି ରହି ଦନ୍ତା ହାତୀଟା ସାଙ୍ଗରେ ପ୍ରଥମ ମୁକାବିଲା କରିଥିଲେ ସେହି ପଥର ଉପରେ ଯାଇ ସେମାନେ ବସିଲେ ଏବଂ ଆଶା କରି ଅପେକ୍ଷା କରି ରହିଲେ ଯେ ହାତୀଟା ସେହି ବାଟରେ ଆସିବ । କିନ୍ତୁ ହାତୀଟା ନେଲା ଓଡ଼ାଇର ଅନ୍ୟ ଗୋଟିଏ ଢୁଆ ଆଡ଼କୁ ପଳାଇଲା ।

ଦନ୍ତା ହାତୀକୁ ଦୟା ଦେଖାଇ ଯେତିକି ସମୟ ଦିଆ ଯାଇଥିଲା ସେଥିରୁ ପାଞ୍ଚ ଦିନ କଟି ଯାଇ ଥାଏ, ଏବଂ ଚନ୍ଦନ୍ ବ୍ୟସ୍ତ ହୋଇ ପଡୁଥାନ୍ତି। ଅପେକ୍ଷା କରିବା ଛଡ଼ା ତାଙ୍କର ଅନ୍ୟ ଉପାୟ ନ ଥିଲା। ହଠାତ୍ ନ ଭାବି ଚ ଚିନ୍ତି କିଛି କରିଦେବା ବୋକାମି ହେବ। ଡାକ୍ତର ରମେଶ ତାଙ୍କ ମନ କଥା ବୁଝିପାରିଲେ ଏବଂ ତାଙ୍କୁ ହଠାତ୍ କିଛି କରି ନ ବସିବା ଲାଗି ପରାମର୍ଶ ଦେଲେ।



ଦନ୍ତା ହାତୀଟା ନେଲ୍ସି ଓଡାଇ ଅଞ୍ଚଳରେ ଅନେକ ସମୟ ଧରି ରହିଲା । ଦୁଇଟା ଚୂଆ ଭିତର୍‌ ସେ କେଉଁଟାକୁ ଯିବ ସହଜରେ ଅନୁମାନ କରି ହେଲା । ନଈର ତଳ ଆଡେ ଥିବା ଚୂଆକୁ ହାତୀଟା ଗଲେ ଭଲ ହେବ । ସେଠି ସେ ଅପେକ୍ଷା କରିବେ । ଏହା ଭାବି ସେ ତାଙ୍କର କେତେଜଣ ଲୋକଙ୍କୁ ଉପର ଆଡର ଚୂଆ ପାଖରେ ଥିବା ଗଛମାନଙ୍କ ଉପରେ ବସି ହାତୀଟା ଆସିଲେ ପାଟିତୁଣ୍ଡ କରି ତଳ ଚୂଆ ଆଡକୁ ଘଉଡାଇ ଦେବାକୁ ଆଦେଶ ଦେଲେ । ସେ ସେମାନଙ୍କୁ କେତେଟା ଟିଣ, ଢୋଲ ଓ ଫୋଟକା ବାଣ ଦେଲେ । ହାତୀଟା ଯେମିତି ଚୂଆ ପାଖକୁ ଆସିଛି, ଗଛ ଉପରେ ଥିବା ଲୋକମାନେ ତାକୁ ଘଉଡ଼ିବାକୁ ଚେଷ୍ଟା କଲେ । ଫଳରେ ଏଯା ହେଲା, ହାତୀଟା ବେଶି ରାଗିଗଲା । ସେ ଗଛ-ଗୁଡାକୁ ଭାଙ୍ଗି ତଳେ ପକାଇ ଦେବାକୁ ଚେଷ୍ଟା କଲା । ସେ ଯେମିତି ଚୂଆର ଖୁବ୍‌ ପାଖକୁ ଚାଲି ଆସିଲା, ଏତେ ଜୋର୍‌ରେ ଶବ୍ଦ କରହେଲା ଯେ ଦନ୍ତା ହାତୀଟା ମଧ୍ୟ ତାହା ସହି ପାରିଲା ନାହିଁ । ଶେଷରେ ଗୋଟାଏ ବିକଟାଳ ଗର୍ଜନ କରି ସେ ପଳାଇଲା ।

ନେଲ୍ସି ଓଡାଇର ଉପର ଆଡ ଚୂଆରୁ ତଡି ଦିଆଯିବା ପରେ ଦନ୍ତା ହାତୀଟା ଯେତିକି ରାଗିଗଲା ସେତିକି ଜୋର୍‌ରେ ତା'ର ଶୋଷ ବଢିଗଲା । ତଳ ଆଡ ଚୂଆ ପାଖରେ ଲୁଚି ବସିଥିବା ଶିକାରୀମାନେ ସେ ଆସୁଥିବାର ଶବ୍ଦ ଅନେକ ଦୂରରୁ ଶୁଣି ପାରିଲେ । କିନ୍ତୁ ସେମାନଙ୍କର ଦୁର୍ଭାଗ୍ୟକୁ ସେମାନେ ଯେଉଁ ପଟେ ଅପେକ୍ଷା କରିଥିଲେ ତା'ର ଠିକ୍ ବିପରୀତ ପଟର ଗୋଟିଏ ଚୂଆ ଆଡକୁ ହାତୀଟା ସିଧା ମୁହାଁଇଲା । ହାତୀଟା ଯେଉଁ ଚୂଆ ପାଖରେ ଠିଆ ହୋଇଥିଲା ସେଠୁ ଶିକାରୀମାନେ ଯେଉଁ ଗଛ ଉପରେ ଲୁଚି ବସି ଥିଲେ ତାହା ଚାଳିଶ ମିଟରରୁ ଅଧିକ ଦୂର ହେବ । ହାତୀଟା ଯଦି ସେମାନେ ଅପେକ୍ଷା କରିଥିବା କୂଳ ପଟେ ଆସିଥାନ୍ତା । ତା ହେଲେ ଅଭୟାରଣ୍ୟ ପରିଚାଳକ ତାକୁ ଗୁଳି ଦେଇ ପାରିଥାନ୍ତେ । ବର୍ତ୍ତମାନ ଶିକାରୀମାନଙ୍କୁ ହତାଶ ହେବାକୁ ପଡିଲା । ସେମାନେ ଭାରି ବ୍ୟସ୍ତ ହୋଇ ଅପେକ୍ଷା କଲେ । ସେମାନେ ଆଶା କରୁଥିଲେ ଯେ ଅନ୍ତତଃ ଫେରିଲାବେଳେ ହାତୀଟା ସେମାନଙ୍କ ପଟ ଦେଇ ଆସିବ ।

ପାଣି ପିଇ ଶୋଷ ମାରିବା ପରେ ଦନ୍ତା ହାତୀଟା ଖାଇବା ପାଇଁ ତରବର ହେଲା । କାରଣ ତା'ର ଖାଇବା ବେଳ କେତେବେଳୁ ହୋଇ-ଯାଇଥିଲା । ଶିକାରୀମାନେ ଯାହା ଆଶା କରୁଥିଲେ ତାହା ହିଁ ହେଲା, ହାତୀଟା ସେମାନଙ୍କ ଗଛ ଆଡକୁ ମୁହାଁଇଲା । ଅଭୟାରଣ୍ୟ ପରିଚାଳକ ଠିକ୍ ଲକ୍ଷ କରି ବନ୍ଧୁକ ଫୁଟାଇଲେ, ହାତୀଟା ଯେମିତି ଚୂର୍ଣ୍ଣ ପାଇ

ବାଜିବା ଭଳି ଜାଗାକୁ ଚାଲି ଆସିଛି । ଗୁଳିଟା ଯାଇ ହାତୀର ଗୋଟିଏ ପଞ୍ଜର ହାଡରେ ବାଜି ତଳେ ପଡିଗଲା । ବନ୍ଧୁକଟା ଅନ୍ୟ ବନ୍ଧୁକ ଭଳି ଜୋର୍ ଶବ୍ଦ କଲା ନାହିଁ, ଖୁବ୍ କମ୍ ଶବ୍ଦ ହେଲା । ଶବ୍ଦଟା ଆସିଥିବା ଜାଗା-ଟାକୁ ଠିକ୍ ବାରି ନ ପାରି ହାତୀଟା ଆଗକୁ ମାଡି ଆସିଲା । ହାତୀଟା ଗୁଳି ନ ବାଜିବା ଭଳି ଦୂର ଜାଗାକୁ ପଳାଇଯିବା ଆଗରୁ ଚନ୍ଦନ୍ ଜଲ୍‌ଦି ଜଲ୍‌ଦି ବନ୍ଧୁକରେ ଗୁଳି ଭର୍ତ୍ତି କରି ଫୁଟାଇଲେ । କିନ୍ତୁ ଗୁଳିଟା ଯାଇ ହାତୀ ଦେହରେ ଅଡୁଆ ଭାବରେ ବାଜିଲା । ଶିକାରୀମାନେ ଦେଖିଲେ ଯେ ସେଟା ହାତୀ ଦେହରେ ପଶିଲା ନାହିଁ କି ମୂର୍ଚ୍ଛା କରିବା ଔଷଧ ତା' ଦେହ ଭିତରକୁ ଗଲା ନାହିଁ । ଦନ୍ତା ହାତୀ ଖୁବ୍ ରାଗିଯାଇ ପଳାଇଗଲା । ଶିକାରୀମାନେ ଠିକ୍ ଭାବରେ ତାକୁ ଲକ୍ଷି ପାରିଲେ ନାହିଁ । ନିରଶ ହୋଇ ସେମାନେ ଘରକୁ ଫେରିଲେ । ଏଇଟା ଥିଲା ଷଷ୍ଠ ଦିନ ।

ମୋହନ ଖୁସି ହୋଇ ଦେଖିଲା ସମସ୍ତେ ଫେରି ଆସୁଛନ୍ତି ଏବଂ ତାକୁ କେହି ନ କହିବା ଆଗରୁ ସେ ଜାଣି ପାରିଲା ଯେ ସେମାନେ ତାଙ୍କ କାମରେ ସଫଳ ହୋଇ ନାହାଁନ୍ତି । ସେମାନଙ୍କ ମୁହଁରେ ହସ ନାହିଁ, ସମସ୍ତେ ଗମ୍ଭୀର ଦିଶୁଛନ୍ତି । ସେଦିନ ରାତିରେ ଖାଇଲା ବେଳେ ମୋହନ ବୁଝି ପାରିଲା ଯେ ସମସ୍ତେ ଖୁବ୍ ବ୍ୟସ୍ତ । ସେମାନେ ଖୁବ୍ କମ୍ କଥାବାର୍ତ୍ତା କଲେ । ସେ ଜାଣି ପାରିଲା ଯେ ତା' ବାପା ହାତୀଟାକୁ ଯେମିତି ଛାଡି ଦେବେ ନା ପୁଣି ତା' ପଛରେ ଲାଗିବେ ଭାବି ଠିକ୍ କରୁଛନ୍ତି । ଅବଶ୍ୟ ଶୀଘ୍ର ସମସ୍ତଙ୍କର ବ୍ୟସ୍ତତା କମିଗଲା ଓ କଥାବାର୍ତ୍ତା ଆରମ୍ଭ ହୋଇଗଲା । ଚନ୍ଦନ୍ ସବୁବେଳ ଭଳି ହସିଲେ, ଥଟ୍ଟା ପରିହାସ କଲେ । ଡାକ୍ତର ରମେଶ ଜାଣି ପାରିଲେ ଯେ ତାଙ୍କର ବନ୍ଧୁ କିଛି ଗୋଟାଏ ନିଷ୍ପତ୍ତିରେ ପହଞ୍ଚି ସାରିଛନ୍ତି, ସେ କେବଳ ମାରଣା ହାତୀ ପଛରେ ଲାଗିବେ ନୁହେଁ, ତାକୁ ଯେମିତି ହେଲେ ଧରିବେ । ସେ ଠିକ୍ ବୁଝି ପାରିଥିଲେ । ଚନ୍ଦନ୍ ସେ କଥା ନେଇ ବହୁତ ଚିନ୍ତା କରିଥିଲେ ଏବଂ କେମିତି କ'ଣ କରିବାକୁ ହେବ ଭାବୁଥିଲେ । ଶେଷରେ ସେ ଠିକ୍ କଲେ ପାଦରେ ଚାଲି ଚାଲି ଯାଇ ହାତୀଟାର ପିଛା କରିବାକୁ ପଡିବ । ଗୋଟାଏ ଜୋରଦାର୍ ବନ୍ଧୁକ ଧରି ମଧ୍ୟ ପାଦରେ ଚାଲି ପିଛା କରିବା ବଡ ବିପଦର କଥା । କିନ୍ତୁ ଏହା ନ କଲେ ସେ ମୋଟେ ହାତୀଟାକୁ ପକଡି ପାରିବେ ନାହିଁ, ଏବଂ ଯାର ଅର୍ଥ ହେଲା ସପ୍ତାହ ଶେଷରେ ଦନ୍ତା ହାତୀଟାକୁ ଗୁଳି କରି ମାରି ଦେବା ।

ଚାରିଆଡ ଭଲ କରି ଦେଖି ପାରିବା ଭଳି ଆଲୁଅ ହୋଇଗଲା ପରେ ତା’ ପର ଦିନ ସକାଳେ ଶିକାରୀମାନେ ବାହାରି ପଡିଲେ । ସେଇଟା ଥିଲା ଶେଷ ଦିନ । ଅଭୟାରଣ୍ୟ ପରିଚାଳକ ତା’ ଆଗଦିନର ବାଟଟା ଖୋଜି ବାହାର କରି ପାଦେ ପାଦେ ହାତୀ ଖୋଜ ଦେଖି ଦେଖି ହାତୀଟାର ପିଛା କଲେ । ସେ ଚାହୁଁ ନ ଥିଲେ ଯେ ତାଙ୍କର ବନ୍ଧୁ,ରମେଶ କିମ୍ବା ଜଗୁଆଳି ଜଣକ ବିପଦରେ ପଡନ୍ତୁ । ତେଣୁ ସେମାନଙ୍କୁ ସେ ଟିକିଏ ଦୂରରେ ତାଙ୍କ ପଛେ ପଛେ ଆସିବାକୁ କହିଲେ ।

ହାତୀ ଖୋଜ ପରିଷ୍କାର ଦିଶୁଥିଲା, ତେଣୁ ସେ କେଉଁ ଦିଗରେ ଯାଉଛି ଜାଣିବା ସହଜ ହେଲା । କିନ୍ତୁ ଅଭୟାରଣ୍ୟ ପରିଚାଳକଙ୍କୁ ବହୁତ ସାବଧାନ ହୋଇ ଆଗେଇବାକୁ ପଡିଲା । ତାଙ୍କୁ କେବଳ ହାତୀ ଯାଇଥିବା ବାଟଟାକୁ ଭଲ ଭାବରେ ଦେଖିବାକୁ ପଡୁ ନ ଥିଲା । ଯାଉ ଯାଉ ସେ ଚାରିଆଡକୁ ଆଖି ବୁଲାଉ ଥାନ୍ତି । କିଏ ଜାଣେ ମାରଣା ହାତୀଟା କେଉଁଠି ଲୁଚି ରହିଥିବ । ତେଣୁ ସେ ଖୁବ୍ ଜୋରରେ ଆଗେଇ ପାରୁ ନ ଥିଲେ ।

ଦନ୍ତା ହାତୀଟା ଅନେକ ଦୂରକୁ ଚାଲି ଯାଇଥିଲା । ଖାଲି ଖାଇବା ପାଇଁ ବାଟରେ ଥରେ ଅଟକି ଥିଲା । ଯେତେବେଳେ ଅଭୟାରଣ୍ୟ ପରି-ଚାଳକ ଶେଷରେ ତାକୁ ଠାବ କଲେ ସେତେବେଳକୁ ଖରା ଗଡିଲାଣି । ଜନ୍ତୁଟା ଗୋଟିଏ ଖୋଲା, ଗଛ ନ ଥିବା ଜାଗାରେ ଥାଏ । ଜାଗାଟା ଆଣ୍ଠୁ ଉଚ୍ଚ ଘାସରେ ଭର୍ତ୍ତି, କିଛି କିଛି ଘାସ ଶୁଖି ଯାଇଥାଏ । ହାତୀଟା ଘାସ ଖାଉଥାଏ । ଅଭୟାରଣ୍ୟ ପରିଚାଳକ ପବନକୁ ପରୀକ୍ଷା କରି ଦେଖିଲେ । ଶିକାର ଆରମ୍ଭ ହେବା ବେଳୁ ସେ ସେୟା କରି ଆସିଥିଲେ । ସେ ନିଶ୍ଚିତ ହେବାକୁ ଚାହୁଁଥିଲେ, ସେମାନଙ୍କ ଦେହର ଗନ୍ଧ ଯେମିତି ପବନରେ ଯାଇ ହାତୀ ନାକରେ ନ ବାଜେ । ସେ ମୁଠାଏ ଶୁଖିଲା ପତ୍ରକୁ ହାତରେ ମଳି ଦେଇ ପବନରେ ଉଡାଇ ସେଗୁଡିକ କେଉଁପଟେ ଯାଇ ପଡୁଛି ଦେଖିଲେ । ଯେତେବେଳେ ସେ ନିଶ୍ଚିତ ହେଲେ ଯେ ହାତୀଟା ସେମାନଙ୍କର ଆସିବା ଜାଣି ପାରିନାହିଁ, ସେ ପଡିଆ ପାଖର ଗୋଟିଏ ଗଛ ଆଢୁଆଳରେ ବସି ପଡିଲେ ଏବଂ ହାତୀଟା ସୁବିଧା ଜାଗାକୁ ଆସିବା ଯାଏଁ ଅପେକ୍ଷା କଲେ ।

କିନ୍ତୁ ହାତୀଟା ଚଳିବାର ସୂଚନା ମିଳିଲା ନାହିଁ । ଛାଇ ଲମ୍ବିବାକୁ ଆରମ୍ଭ କଲାଣି । ସେ ଯଦି ଆଉ ଅପେକ୍ଷା କରି ବସନ୍ତି ବହୁତ ଡେରି

ହୋଇଯିବ । ଏବଂ ଯେଉଁ ସାତଦିନ ଦିଆ ଯାଇଥିଲା ତା' ସରିଯିବ । ବର୍ତ୍ତମାନ ହିଁ ଶେଷ ସୁଯୋଗ ଏବଂ ଅଭୟାରଣ୍ୟ ପରିଚାଳକ ସେ ସୁଯୋଗ ହରାଇବେ ନାହିଁ ବୋଲି ଠିକ୍ କଲେ ।

ସେ ଠିଆ ହୋଇ ପଡ଼ିଲେ ଏବଂ ମୂର୍ଚ୍ଛା କରିବା ବନ୍ଧୁକଟା ଠିକ୍ ଅଛି କି ନାହିଁ ଦେଖି ନେଲେ । ସେଠି ସେ ଲୁଚିଥିବା କଥା ହାତୀଟା ଜାଣି ପାରିନାହିଁ ଦେଖି ହିଁ ସେ ଏଥର କାମ ହାସଲ କରି ପାରିବେ ବୋଲି ଆଶା କରୁଥିଲେ । ବନ୍ଧୁକଟା ତ ବେଶି ଶବ୍ଦ କରେ ନାହିଁ, ସେ ଭାବିଲେ ଯେ ବନ୍ଧୁକ ଫୁଟାଇ ଦେଇ ଔଷଧ କାମ କଲାଯାଏ ସେ ସେମିତି ଲୁଚି ରହିଯାଇ ପାରିବେ । ବାଘ ହରିଣ ପଛରେ ଗଲା ପରି ଚନ୍ଦ୍ରନ୍ ଚପି ଚପି ହାତୀଟା ପଛରେ ଲାଗି ଥାନ୍ତି । ଲୁଚିଥିବା ଜାଗାଟିକର ପୂରା ସୁବିଧା ନେଇ । ଜାଗା-ଟାର ଏଠି ଗୋଟିଏ ବୁଦା, ସେଠି ଟିକିଏ ଖାଲ ଜମି । ସେ ତାଙ୍କର ଛାତି ଧଡ଼ ଧଡ଼ ହେଉଥିବା ଶୁଣି ପାରୁଥାନ୍ତି ଏବଂ ଭାବୁଥାନ୍ତି ବନ୍ଧୁକଟାକୁ ଠିକ୍ ଭାବରେ ଧରି ପାରିବେ କି ନାହିଁ । ସେ ଯେତେବେଳେ ହାତୀ ଦେହରେ



ଗୁଳି ଯାଇ ବାଜିବା ଭଳି ଜାଗାକୁ ଆସିଗଲେ, ଗୋଟିଏ ସବୁ ଗଛ ପଛରେ ଲୁଚିଗଲେ, ବନ୍ଧୁକ ନଳୀଟା ତା' ଉପରେ ରଖି ଲକ୍ଷ କରି ବନ୍ଧୁକ ଫୁଟାଇ ଦେଲେ ।

ଦନ୍ତା ହାତୀଟା ପଛ କରି ଠିଆ ହୋଇ ଥାଏ । ଗୁଳିଟା ଯାଇ ଯେମିତି ତା' କାନ୍ଧ ପାଖର ଗୋଟିଏ ମାଂସଳ ଜାଗାରେ ବାଜିଛି ହାତୀଟା ଟିକିଏ ଚଙ୍କି ଯିବାର ସେ ଦେଖି ପାରିଲେ । ସେ ବୁଲି ପଡ଼ିଲା ଏବଂ ତା' ଦେହରେ କ'ଣ ଆସି ବାଜିଲା ଜାଣିବା ପାଇଁ ଚାରିଆଡ଼କୁ ଅନାଇଁଲା ।

ଠିକ୍ ସେତିକିବେଳେ ପବନ ଓଲଟା ଦିଗରେ ବହିଲା ଏବଂ ହାତୀଟା ଅଭୟାରଣ୍ୟ ପରିଚାଳକଙ୍କ ଦେହର ଗନ୍ଧ ପାଇ ଗଲା । ତା'ର ମାରଣା ପ୍ରକୃତି ହଠାତ୍ ବଢ଼ି ଗଲା । ଚନ୍ଦନ୍ ଦେଖିଲେ ଯେ ଆଉ ଉପାୟ ନାହିଁ । ହାତୀ କବଳରୁ ଖସିବାକୁ ହେଲେ ତାଙ୍କୁ ଦୌଡ଼ି ପଳାଇବାକୁ ପଡ଼ିବ । ତେଣୁ ସେ ଏକମୁହାଁ ଦୌଡ଼ିବାକୁ ଠିକ୍ କରିନେଲେ ।

ଅଭୟାରଣ୍ୟ ପରିଚାଳକ ତିଆଁଟେ ମାରି ହାତୀ ପାଖରୁ ଦୌଡ଼ିଲେ । ତାଙ୍କ ଗୋଡ଼ ଯେତେ ଜୋର୍‌ରେ ପାରିଲା । ମାରଣା ଜନ୍ତୁଟା ଶିକାରୀକୁ ଦେଖି ପକାଇଲା ଏବଂ ଗୋଡ଼ାଇଲା । ଗୋଟାଏ ଭୟଙ୍କର, ଚୁପ୍ ଚାପ୍, ମାରଣା ଜନ୍ତୁ ଚନ୍ଦନ୍‌ଙ୍କୁ ଗୋଡ଼ାଇ ଥାଏ । ଜଙ୍ଗଲ ଭିତରର ଖୋଲା ଜାଗାରେ ମଧ୍ୟ ଜଣେ ମଣିଷ ଦୌଡ଼ିବାରେ ଅନେକ ଅସୁବିଧା ଥାଏ । କିନ୍ତୁ ହାତୀ ପାଇଁ ପ୍ରାୟ କୌଣସି ଅସୁବିଧା ହୁଏ ନାହିଁ । ଅତି ଘଞ୍ଚ ବଣ-ବୁଦାକୁ ମଧ୍ୟ ସେ ମାଡ଼ି ଚକଟି ଚାଲିଯାଇ ପାରିବ । ଅଭୟାରଣ୍ୟ ପରି-ଚାଳକ କଣ୍ଟା ଖୁଁଚ ଦେଖି ଦେଖି ଦୌଡ଼ିଲା ବେଳକୁ ହାତୀ ଖୁବ୍ ପାଖେଇ ଆସୁଥାଏ । ଅଭୟାରଣ୍ୟ ପରିଚାଳକ ମନେ କଲେ ଯେ ବନ୍ଧୁକଟା ଗୋଟାଏ ଅଦରକାରୀ ବୋଝ, ସେ ସେଟାକୁ ଫିଙ୍ଗିଦେଲେ । ଏହା ଫଳରେ ଆଉ ଟିକିଏ ବେଶି ଜୋର୍‌ରେ ଦୌଡ଼ି ପାରିଲେ । ତଥାପି ତାଙ୍କୁ ବହୁତ ସାବଧାନ ହେବାକୁ ପଡ଼ିଲା । ଦୌଡ଼ିବାବେଳେ ଟିକିଏ ଭୁଲ୍ ହେଲେ କି ଝୁଣ୍ଟି ପଡ଼ିଲେ ଆଉ ରକ୍ଷା ନାହିଁ, ପ୍ରାଣଟା ଚାଲିଯିବ ।

ଦୁହେଁ ଖୁବ୍ ପାଖା ପାଖି ଦୌଡ଼ୁଥାନ୍ତି । ହାତୀଟା ତାଙ୍କ ପଛରେ ଗର୍ଜନ କରି ଦୌଡ଼ି ଥାଏ । ଅଭୟାରଣ୍ୟ ପରିଚାଳକଙ୍କ ଭାଗ୍ୟ ଭଲ । ଦୁହେଁ ଗୋଟାଏ ଭଲ ଜଙ୍ଗଲିଆ ରାସ୍ତାକୁ ଚାଲି ଆସିଲେ । ତା'ପରେ ସେ ହାତୀଟାକୁ ବେଶ୍ ପଛରେ ପକାଇ ଆଗକୁ ଦୌଡ଼ି ଗଲେ । କିନ୍ତୁ ସେ ଭାବୁଥାନ୍ତି, ଏମିତି ଆଉ କେତେଦୂର ଦୌଡ଼ିବେ । ମାରଣା ହାତୀଟା ତା'

ଘା’ କଷ୍ଟ ଦେଉଥିଲେ ମଧ୍ୟ ସେମିତି ଜୋର୍‌ରେ ଗୋଡାଉଥାଏ । କିନ୍ତୁ ଶିକାରୀଜଣକ ହାଲିଆ ହୋଇ ଯାଇଥାନ୍ତି ।

ହାତୀଟା ଖୁବ୍ ପାଖକୁ ଚାଲି ଆସିଲା ଏବଂ ତାଙ୍କୁ ତଳେ କଚାଡି ଦେବାକୁ ଶୁଣ୍ଢ ଉଠାଇଲା । ହାତୀର ଏତେ ଦୌଡା ଦୌଡି ଫଳରେ ହଠାତ୍ ତା’ ଦେହରେ ଔଷଧଟା କାମ କରିବାକୁ ଆରମ୍ଭ କଲା । ଶୁଣ୍ଢଟା ଧୀରେ ଧୀରେ ନଇଁ ଆସିଲା, ଧୀର ଗତି (ସ୍ଲୋ ମୋସନ୍) ସିନେମାରେ ଯେମିତି । ତା’ ଗୋଡ ଆଉ ସିଧା ହୋଇ ରହି ପାରିଲା ନାହିଁ, ସେ ଝୁଙ୍କି ପଡି ତଳେ ଗଡିଗଲା ।

ହାତୀଟା ପଡି ଯିବା ଶବ୍ଦ ଶୁଣି ଅଭୟାରଣ୍ୟ ପରିଚାଳକ ଅଟକି-ଗଲେ । ଦମ୍ଭା ହାତୀ ଯେତେବେଳେ ଆଉ ଉଠିଲା ନାହିଁ ଦେଖିଲେ, ସେ ହ୍ୱିସିଲ୍ ବଜାଇଲେ । ଡାକ୍ତର ରମେଶ ଓ ଜଗୁଆଳି ଜଣକ ହ୍ୱିସିଲ୍ ଶବ୍ଦ ଶୁଣି ଦୌଡି ଆସିଲେ । ସେମାନେ ତା’କୁ ଲକ୍ଷ୍ୟ କଲେ, ତା’ର ଗହୀରିଆ, ଓଜନିଆ ନିଃଶ୍ୱାସ ପ୍ରଶ୍ୱାସ ଶୁଣିଲେ । ସେଥିରୁ ଜଣା ପଡିଲା ଯେ ମ୍ଜ’ । ଔଷଧ ବେଶ୍ କାମ କରିଛି, ହାତୀଟା ଦେହରେ । ଶିକାରୀମାନେ ଧୀରେ ଧୀରେ ତା’ ଆଡକୁ ଆଗେଇଲେ ।



ଶିକାରୀମାନଙ୍କ ଭାଗ୍ୟ ଭଲ, ହାତୀଟା ଏମିତି ପଡ଼ିଥାଏ ଯେ ତା’ ଘା’ଟା ଉପରକୁ ରହିଥାଏ । ଘା’ଟା ଖୁବ୍ ଗହୀରିଆ । ଡାକ୍ତର ରମେଶ ଯେତେବେଳେ ଘା’ଟାକୁ କାଟି ଦେଲେ, ରକ୍ତ ଓ ପୂଜ ଛିଟ୍‌କି ବାହାରି ଆସିଲା ଓ ତାଙ୍କର ଲୁଗାପଟା ଅସନା ହୋଇଗଲା । “ବିଚରାକୁ ବହୁତ କଷ୍ଟ ହୋଇଥିବ ”, ଡାକ୍ତର କହିଲେ ।

“ତାର ଏମିତି ମାରଣା ହୋଇଯିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ”, ଅଭୟାରଣ୍ୟ ପରିଚାଳକ ଗୁଣୁ ଗୁଣୁ ହୋଇ କହିଲେ ।

ଘା’ଟା ଭିତରେ ଆଙ୍ଗୁଠି ପୂରାଇ ଡାକ୍ତର ତିନି ଖଣ୍ଡ ସିସା ବାହାର କରି ଆଣିଲେ । ସେଗୁଡ଼ିକ ବୋଧେ କୌଣସି ପୁରୁଣା କାଳିଆ ବନ୍ଧୁକର ଗୁଳି । ସେଗୁଡ଼ିକୁ ସେ ଅଭୟାରଣ୍ୟ ପରିଚାଳକଙ୍କୁ ଦେଲେ । “ଏ ନିଶ୍ଚୟ ଜଣେ ଚାଷୀର କାମ । ହାତୀଟା ଯାଇ ତା’ ଫସଲ ବୋଧେ ଥରକୁ ଥର ନଷ୍ଟ କରୁଥିଲା ”, ଚନ୍ଦନ୍ ଧୀର ଅଥଚ ରାଗି ଗଳାରେ କହିଲେ ।

ଡାକ୍ତର ରମେଶ ଘା’ଟାକୁ ଧୋଇ ସଫା କରିଦେଲେ, ଜଲ୍‌ଦି ଶୁଖିଯିବା ପାଇଁ ମେଞ୍ଚାଏ ଆଣ୍ଟି ବାଇଓଟିକ୍ ଔଷଧ ସେଥିରେ ଢାଳି ଦେଲେ, ପଟି ଦେଇ ସିଲାଇ କରିଦେଲେ । ହାତୀଟା ଅନେକ ବେଳ ଯାଏଁ ଉଁ ଚୁଁ ନ ହେବାର ଦେଖି ରମେଶ ମୁଙ୍କ । ଔଷଧ କାଟିବା ପାଇଁ ଗୋଟିଏ ଔଷଧ ଦେଲେ । ତା’ପରେ ଶିକାରୀମାନେ ଦୂରରେ ଗୋଟିଏ ନିରାପଦ ଜାଗାକୁ ଚାଲିଯାଇ ଅପେକ୍ଷା କଲେ ।

କିଛି ସମୟ ପରେ ତଳେ ପଡ଼ିଥିବା ହାତୀଟା ଟିକିଏ ହଲଚଲ ହେଲା । ତା’ପରେ ଖୁବ୍ ଆସ୍ତେ ଆସ୍ତେ ଉଠି ଠିଆହେଲା । ସେ ଯେତେ-ବେଳେ ଏମାନଙ୍କ ଆଡ଼କୁ ଅନାଇଁଲା, ଏମାନେ ଦେଖିଲେ ଯେ ସେ ଜୋରରେ କଚାଡ଼ି ପଡ଼ିଲା ବେଳେ ତା’ର ଡାହାଣ ପଟ ଦାନ୍ତଟା ଛଡ଼ାଇଛି ଜାଗାରୁ ଠିକ୍ ଭାଙ୍ଗି ଯାଇଛି । କେତେକ ଦୃଷ୍ଟିରୁ ପୁରୁଷ ହାତୀଟା ଆଉ ବଡ଼ ଦାନ୍ତ ହାତୀ ହୋଇ ନ ଥିଲା । ତା’ର ଯେଉଁ କଷ୍ଟ ହେଉଥିଲା ସେ କଷ୍ଟ ପୂରା ଚାଲି ଯାଇଥିଲା । ବର୍ତ୍ତମାନ ଯେଉଁ ପଟେ ଇଚ୍ଛା ସେହି ପଟେ ସେ ଶୁଣ୍ଢ ବୁଲାଇ ପାରୁଥିଲା । ଯତେ ଯେମିତି ଗୋଟାଏ ଭାରି ଓଜନିଆ ବୋଝ ତା ମୁଣ୍ଡରୁ ଓହ୍ଲାଇ ଯାଇଥିଲା । ତା’କୁ ଆଉ ଚାଷ ଜମିରେ ପଶି ଫସଲ ଖାଇବାକୁ ପଡ଼ିବ ନାହିଁ ।

ଦନ୍ତା ହାତୀଟା ଦୁଇଜଣ ମଣିଷଙ୍କୁ ଦେଖିଲା, କିନ୍ତୁ ଆକ୍ରମଣ କରିବାକୁ ଚେଷ୍ଟା କଲା ନାହିଁ । ସେ ଯେତେବେଳେ ଶୁଣ୍ଢକୁ ଏକେବାରେ ଉପରକୁ ଟେକି ଦେଇ ଚାଲିଗଲା, ସେ ହୁଦେଁ ଭାବିଲେ ହାତୀଟା କ’ଣ “ଧନ୍ୟବାଦ” ବୋଲି କହୁଛି କି ।

# ଜଙ୍ଗଲରେ ଗୋଟିଏ ରାତି

"ବାପା, ମୋ ଛୁଟି ତ ସରି ଆସିଲାଣି । ଶେନ୍‌ବାଗା ଉରନି ପାଖରେ ଗୋଟିଏ ରାତି କଟାଇ ଜଙ୍ଗଲର ପଶୁପକ୍ଷୀଙ୍କୁ ଦେଖିବାକୁ ମୋର ଇଚ୍ଛା ହେଉଛି ।" ଏକଥା ଦିନେ ସକାଳେ ମୋହନ ତା' ବାପାଙ୍କୁ କହିଲା ।

"ଯିବା, କାହିଁକି ଯିବା ନି ।" ତା' ବାପା ରାଜି ହେଲେ । "ଆଉ ଏଇ ସମୟଟା ଇ ଭଲ ସମୟ । ଏବେ ତ ଚନ୍ଦ୍ରପକ୍ଷ, ରାତିରେ ଭଲ କରି ଦେଖି ହେବ ।" ସେ ପୁଣି କହିଲେ । ମୋହନ ଖୁସି ହୋଇଗଲା । "ପ୍ରକୃତରେ ମୁଁ ନିଜେ ଏକଥା ଭାବୁ ଥିଲି," ତା' ବାପା କହିଲେ । "ଗଲେ ମୁଁ ଚୋର ଶିକାରୀମାନଙ୍କ ଉପରେ ନଜର ରଖି ପାରିବି ଏବଂ ଜନ୍ତୁ ଜନ୍ତା କେମିତି ଅଛନ୍ତି ଦେଖି ପାରିବି । ଆଉ ଏବେ ଜଳକଷ୍ଟ ସମୟ, ବଡ ଜନ୍ତୁ-ଗୁଡାକ କେମିତି ଅଛନ୍ତି ଦେଖିବି "

ଜଲ୍‌ଦି ଖିଆପିଆ ସାରି ସେମାନେ ବାହାରି ପଡିଲେ । ବାଟରେ ଦନ୍ତା ହାତୀଟା ସାଙ୍ଗରେ ଦେଖା ହେଲା । ଅଭୟାରଣ୍ୟ କର୍ମଚାରୀମାନେ ଅଭ୍ୟାସ ବଶତଃ ତା'କୁ ଆଗଭଳି ଛଦା ଦାନ୍ତ ହାତୀ କହୁ ଥାନ୍ତି । ଯଦିଓ ତା' ଦାନ୍ତ ଯୋଡାକ ଆଉ ଛଦାଛନ୍ଦି ହୋଇ ନ ଥାଏ । ଜଙ୍ଗଲି ରାସ୍ତା କଡରେ ହାତୀଟା ତାଳ ପତ୍ର ଚିରାଇ ଖାଉ ଥାଏ । ଖୁବ୍ ଶାନ୍ତ ଭାବରେ । କିଛି ହଇରଣ ନ କରି ସେ ସେମାନଙ୍କୁ ତାଙ୍କ ବାଟରେ ଚାଲି ଯିବାକୁ ଦେଲା । ଅଭୟାରଣ୍ୟ ପରିଚାଳକ ଦେଖିଲେ ଯେ ତା' ଘା'ଟା ଶୁଖି ଆସୁଛି ।

ଶେନ୍‌ବାଗା ଉରନି ରେ ପହଞ୍ଚିଲା ବେଳକୁ ବେଳ ଅନେକ ଗଡି-ଗଲାଣି । ଗଡିଆ ପାଖ ଗଛରେ ଚୋର ଶିକାରୀମାନେ ଯେଉଁ ମଞ୍ଚା

ତିଆରି କରିଥିଲେ ସେଇଟା ସେମିତି ରହିଥିଲା । କିନ୍ତୁ କେତେ ଦିନ ଧରି କେହି ସେଟାକୁ ବ୍ୟବହାର କରି ନ ଥାନ୍ତି; କେତେକ ଜାଗାରେ କଣା ହୋଇ ଯାଇଥିଲା ଏବଂ ସେଗୁଡ଼ିକ ଘୋଡ଼ାଇବା ପାଇଁ କଞ୍ଚା ଡାଳ ପତ୍ର ଦରକାର ହେଲା । ମୋହନକୁ କେତେଟା ଛୋଟ ଡାଳ ଭାଙ୍ଗି ଆଣିବାକୁ କହି ଅଭୟାରଣ୍ୟ ପରିଚାଳକ ଗଡ଼ିଆ ଚାରି କଡ଼େ ବୁଲି ଦେଖିଲେ କେଉଁ କେଉଁ ଜନ୍ତୁ ସେଠିକି ଆସିଛନ୍ତି । ଗୁଡ଼ାଏ ପାଦ ଚିହ୍ନ ଦେଖି ସେ ଖୁସି ହୋଇଗଲେ । ଅନେକ ପ୍ରକାର ଜନ୍ତୁ ସେଠିକି ଆସିଥାନ୍ତି ।

ମଞ୍ଚା ଉପରକୁ ଚଢ଼ିବା ପାଇଁ ଗୋଟିଏ ନିଶୁଣି ଥାଏ । ସେଟା ଗୋଟିଏ ମୋଟା ବାଉଁଶରୁ ବାହାରିଥିବା ଡାଳଗୁଡ଼ାକୁ ମୂଳରୁ କାଟି ଦେଇ ତିଆରି କରାଯାଇଥାଏ । ସେଇ ମୂଳଗୁଡ଼ିକ ନିଶୁଣିର ପାହାଚ ଭଳି କାମ ଦିଏ । ମୋହନ ଏମିତି ଗୋଟାଏ ନିଶୁଣିରେ ଆଗରୁ କେବେ ଚଢ଼ି ନ ଥାଏ । ସେ ସେଟା ଉପରେ ମାଙ୍କଡ଼ ଭଳି ଚଢ଼ିଲା । ପହିଲେ ପହିଲେ ମଜା ଲାଗିଲା, କିନ୍ତୁ ସେ ଯେମିତି ଟିକିଏ ଉପରକୁ ଚଢ଼ିଗଲା,ବାଉଁଶଟା ଏପଟ ସେପଟ ହୋଇ ହଲିଲା । ଚଢ଼ିବା ଭାରି ଅସୁବିଧା ହେଲା । ଶେଷରେ ଲମ୍ବା ନିଃଶ୍ୱାସ ପକାଇ ମୋହନ ମଞ୍ଚା ଉପରେ ଯାଇ ଗୋଡ଼ ଦେଲା ।

ଆମ୍ବ ଗଛଟାର ଯୋଡ଼ାଏ ଡାଳ ଉପରେ କେତେ ଖଣ୍ଡ ବାଉଁଶକୁ ପକାଇ ସେଗୁଡ଼ିକ ଦଉଡ଼ିଆ ଲଇରେ ବାନ୍ଧି ମଞ୍ଚାଟା ତିଆରି କରାଯାଇଥାଏ । ମଝିରେ ବସିବା ଜାଗାରେ ଆହୁରି କେତେ ଗୁଡ଼ିଏ ବାଉଁଶ ବନ୍ଧା ଯାଇ-ଥାଏ । ଗଛ ଡାଳ ଓ ଲଟା ଚାରି ପାଖରୁ ଝୁଲାଇ ଦିଆ ଯାଇଥାଏ, ଯାହା ଫଳରେ କି ଗଡ଼ିଆକୁ ଆସୁଥିବା ଜନ୍ତୁମାନେ ମଞ୍ଚାରେ ଥିବା ଲୋକମାନଙ୍କୁ ଦେଖି ପାରିବେ ନାହିଁ । ଡାଳ ଲଟା ଗହଳିରେ ଛୋଟ ଛୋଟ ଫାଙ୍କ କରାଯାଇଥାଏ, ଯେଉଁବାଟେ ମଞ୍ଚାରେ ବସିଥିବା ଲୋକେ ଜନ୍ତୁମାନଙ୍କୁ ଦେଖି ପାରିବେ, କିନ୍ତୁ ନିଜେ ଦେଖା ଯିବେ ନାହିଁ । ମଞ୍ଚା ଉପରେ ଚାରି ଜଣ ବସି ପାରିବା ଓ ଆଉ ଦୁଇ ଜଣ ଶୋଇ ରହିବା ପାଇଁ ଯଥେଷ୍ଟ ଜାଗା ଥାଏ । ମଞ୍ଚା ଉପରୁ ଗଡ଼ିଆଟା ଓ ତା' ପାଖ ଆଖ ଅଞ୍ଚଳ ବେଶ୍ ଭଲ ଭାବରେ ଦେଖା ଯାଉଥାଏ ।

ଗଡ଼ିଆଟାର ଆକାର ବିଚିତ୍ର, ସେଥିରେ ଅଧା ପାଣି ଥାଏ । ଆମ୍ବଗଛ ପାଖ ଗଡ଼ିଆ କଡ଼ଟା ପଥୁରିଆ, ପାଣି ଖୁବ୍ ପରିଷ୍କାର, କିନ୍ତୁ ଅନ୍ୟ ପଟଟା କାଦୁଅ ଭର୍ତ୍ତି, ସେଠି ପାଣି କମ୍ ଥାଏ । ଗଡ଼ିଆର ଶେଷରେ ଯାଇ ଦୁଇଟା ଭଲ ଜଙ୍ଗଲିଆ ରାସ୍ତା ମିଶି ଯାଇଥାଏ । ଗଡ଼ିଆ ଓ ତା'ର ପାଖ ଆଖ ଅଞ୍ଚଳ ବେଶ୍ ଓଷ୍ଟା ଓ ଶାଗୁଆ ଗଛଲତାରେ ପୂର୍ଣ୍ଣ । କିନ୍ତୁ ଟିକିଏ ସେପଟକୁ

ଜଙ୍ଗଲଟା ଶୁଖିଲା ଓ ଧୂଳି ଧୂସର । ଗଡ଼ିଆଟା ଯେମିତି ମରୁଭୂମି ଭିତରେ ଥିବା ଗୋଟିଏ ମରୂଦ୍ୟାନ ।

ଭଉର ଓଳି ସମୟ, ସୁବିଆଡ଼ ଚୁପ୍ ଚାପ୍ । ଏବଂ ମୋହନକୁ ... ଉପରେ ଖୁବ୍ ଗରମ ଦେଲା ଓ ନିଃଶ୍ୱାସ ରୁନ୍ଧି ହୋଇଯିବା ଭଳି ଲାଗିଲା ମୋହନର ବାପା ଗୋଟିଏ ଶୁଖିଲା ପତ୍ର ମଞ୍ଜା ତଳୁ ଗୋଟାଇ ... ଉପରେ ପକାଇ ଦେଲେ । ସେଟା ଖଣ୍ଡେ ପଥର ଭଳି ସିଧା ତଳେ ... ପଡ଼ିଗଲା । ସେ ହସିଲେ । ଜଙ୍ଗଲର ନୀରବତାକୁ ଭଙ୍ଗ ନ ଦେବା ଲାଗି ସେ ଠାର ଇସାରାରେ ମୋହନକୁ ଜଣାଇ ଦେଲେ ଯେ ମୋଟେ ପବନ ନାହିଁ ଏବଂ ତେଣୁ ସେମାନଙ୍କ ଦେହର ଗନ୍ଧ ଗଡ଼ିଆ ପାଖକୁ ଆସୁଥିବା ଜନ୍ତୁମାନଙ୍କ ପାଖରେ ପହଞ୍ଚି ପାରିବ ନାହିଁ । ବଣୁଆ ଜନ୍ତୁଙ୍କର, ବେଶି ତାଙ୍କ... ଖାଉଥିବା ଜନ୍ତୁଙ୍କର, ଗନ୍ଧ ବାରିବାର ଶକ୍ତି ଖୁବ୍ ପ୍ରଖର, ଏବଂ ଠିକ୍ ପବନ ବହୁଥିଲେ ସେମାନେ ଅନେକ ଦୂରରୁ ମଧ୍ୟ ମଣିଷ ଦେହର ଗନ୍ଧ ବାରି ପାରନ୍ତି । ବର୍ତ୍ତମାନ ତ ସେମାନଙ୍କ ଦେହର ଗନ୍ଧ ବୋହି ନେବା ଭଳି ପବନ ନାହିଁ । ତେଣୁ ସୁବିଧାରେ ବଣୁଆ ଜନ୍ତୁଙ୍କୁ ଦେଖି ପାରିବାର ଆଶା ଉଜ୍ଜ୍ୱଳ ହୋଇଗଲା ।

## 2

ଗଡ଼ିଆ ପାଖକୁ ପ୍ରଥମେ ଛୋଟ ଛୋଟ ଚଢ଼େଇ ଆସିଲେ । ଦଳ ଦଳ ବୁଲ୍ ବୁଲ୍ ଓ ଜଙ୍ଗଲି ମେନା ଗୋଳ ମାରିବା ପାଇଁ ଆସିଲେ । ପାଣି ପିଇ ସାରିବା ପରେ ସେମାନେ କମ୍ ପାଣି ଥିବା ପଥୁରିଆ ଜାଗାକୁ ଡେଇଁ ଯାଇ ଗାଧୋଇଲେ । ଖୁବ ଜୋର୍‌ରେ କିଚିରିମିଚିରି ହେଉଥାନ୍ତି । ମୋହନର ମନେ ପଡ଼ିଗଲା ବଣଭୋଜି କରି ଯାଇଥିବା ତା' ସାଙ୍ଗ ପିଲାମାନଙ୍କ କଥା ଏବଂ ଚଢ଼େଇ ଗୁଡ଼ାଙ୍କୁ ସେ ଖୁବ୍ ମଜାରେ ଅନାଇଁ ରହିଥାଏ । ଚଢ଼େଇ ଗୁଡ଼ାକ ଖୁସିରେ ଗାଧୋଉଥିଲା ବେଳେ ମୋହନ ଦେଖିଲା ଯେ ଗୋଟେ ଶିକ୍ରାଣ (ସ୍ପାରୋ ହକ୍) ଲୁଚି ରହି ଥିଲା ଏବଂ ଗୋଟାଏ ଡାଳ ଗଛର ଡାଳରେ କେହି ନ ଦେଖିଲା ଭଳି ବସି ପଡ଼ିଲା । ମୋହନ ସେ କ'ଣ କରିବାକୁ ଆସିଛି ଅନୁମାନ କରି ନେଲା ଏବଂ ପାଟିଟାଏ କରି ଚଢ଼େଇ ଗୁଡ଼ାଙ୍କୁ ସାବଧାନ କରାଇ ଦେବାକୁ ମନ ଇଚ୍ଛା ହେଲା ।



ତା' ମନ କଥା ଜାଣିପାରି ତା' ବାପା ମୁଣ୍ଡ ହଲାଇଲେ । ଯାହା ହେଲେ ବି ଶଞ୍ଚାଣଟା ତ ପୁଣି ବଞ୍ଚିବ ଏବଂ ଛୋଟ ଛୋଟ ଚଢ଼େଇ-ମାନେ ହେଲେ ତା'ର ଖାଦ୍ୟ । ମୋହନ ଜଣେ ଜାଣିଚା ଶୁଣିବା ପ୍ରକୃତି ବିଜ୍ଞାନୀ ଭଳି ଏକଥା ଭାବିଲା । ତା' ଭଡା ପାଟି କରିଥିଲେ ସେ ଅଭୟାରଣ୍ୟର ଶାନ୍ତି ଭଙ୍ଗ କରିଥାନ୍ତା । ସେମାନେ ଦେଖୁଛନ୍ତି, ଶଞ୍ଚାଣଟା ହଠାତ୍ ଝାମ ମାରିଲା, ଗୋଟାଏ ବୁଲି ପଡି ସାଏଁକିନା ଗୋଟିଏ ବୁଲ୍‌ବୁଲ୍‌କୁ ଧରିନେଲା ତା' ପଞ୍ଝାରେ ଶିକାରଟି ଧରି ତା' ବସିବା ଡାଳକୁ ଫେରି-ଗଲା । ବୁଲ୍‌ବୁଲ୍‌ଟି ସାଙ୍ଗରେ ଗାଧୋଉଥିବା ଅନ୍ୟ ବୁଲ୍‌ବୁଲ୍ ଗୁଡିକ ଭୟରେ ଚିତ୍କାର କରି ଉଡିଗଲେ ।

ପୁଣି ସବୁ ଯେମିତି ଚୁପ୍‌ଚାପ୍ ହୋଇଗଲା, ଦଳେ ଲଙ୍ଗୁର୍ ମାଙ୍କଡ଼ ଗଛ ଡାଳରେ ଖୁବ୍ ସତର୍କରେ ଓ ମଜାରେ ଦୋଳି ଖେଳି ଖେଳି ଆସି ପହଞ୍ଚିଗଲେ । ସେମାନେ ଯେତେବେଳେ ଗଡିଆ ପାଖକୁ ଆସିଗଲେ, ସେମାନେ ସିଧା ସିଧା ଓହ୍ଲାଇ ଆସିଲେ ନାହିଁ । ଏ ଡାଳରୁ ସେ ଡାଳକୁ, ଏ ଗଛରୁ ସେ ଗଛକୁ ଡେଇଁ ଡେଇଁ, ତାଙ୍କର ଶତ୍ରୁ କିଏ ଆଖ ପାଖରେ ଅଛି କି ନାହିଁ ଭଲ କରି ଦେଖି ଆସିଲେ । କେଉଁଠି କିଛି ଅସୁବିଧା ନାହିଁ ବୋଲି ଜାଣି ସାରି ସେମାନେ ଜଣକ ପରେ ଜଣେ ଗଡିଆକୁ ପାଣି ପିଇବାକୁ ଓହ୍ଲାଇ ଆସିଲେ ଏବଂ ଯେଉଁ ପଟଟା ପଥୁରିଆ ଥାଏ ସେ ପଟକୁ ଗଲେ । ସେମାନଙ୍କ ମା' ମାନଙ୍କ ପେଟକୁ ଯାବୁଡ଼ି ଧରି ଥିବା କୁନି ମାଙ୍କଡ଼ ଗୁଡିକ ତା' ପରେ ଡିଆଁ ଡେଇଁ କରି ଖେଳିଲେ । ସେମାନେ ଭାରି ଚଗଲାମି କରୁଥାନ୍ତି, ଦେଖିବାକୁ ଭାରି ମଜା ଲାଗୁଥାଏ ।



ଲଙ୍ଗୁରମାନଙ୍କୁ ଅନାଇଁ ଥିଲା ବେଳେ ମୋହନର ଆଖି ପଡ଼ିଲା ଗୋଟିଏ ପକ୍ଷୀ ଉପରେ । ସେଟି ଉଡ଼ି ଆସି ଆମ୍ବ ଗଛର ଗୋଟିଏ ନିଚୁ ଡାଳରେ ବସିଲା । ପକ୍ଷୀଟିର ସୌନ୍ଦର୍ଯ୍ୟ ଦେଖି ମୋହନ ଗଦ୍‌ଗଦ ହୋଇଗଲା । ସେ ତାକୁ ଆହୁରି ଭଲ ଭାବରେ ଦେଖିଲା ତା' ବାପାଙ୍କର ବାଇନୋକୁଲାର୍ ଧରି ଏବଂ ଆଶ୍ଚର୍ଯ୍ୟ ହୋଇଗଲା । ପକ୍ଷୀଟି ବୁଲ୍‌ବୁଲ୍ ଭଳି ସାନ, କିନ୍ତୁ ତା' ଅଙ୍ଗ ପୂରା ଧଳା, ମୁଣ୍ଡ ଓ ଚୂଳ କଳା । ପକ୍ଷୀଟିର ସବୁଠୁ ସୁନ୍ଦର ଜିନିଷଟି ହେଲା ତା' ଲାଞ୍ଜ । ଯୋଡ଼ିଏ ରିବନ୍ ଫିତା ଭଳି ଯୋଡ଼ିଏ ଲମ୍ବା ଧଳା ପର ପକ୍ଷୀଟି ପଛରେ ଲମ୍ବି ଆସେ । ପକ୍ଷୀଟି ଥିଲା ଗୋଟିଏ ଅଣ୍ଡିରା ପାରାଡାଇଜ୍ ଫ୍ଲାଇକ୍ୟାଚର୍ । ମୋହନ ଭାବିଲା ତା' ଲାଞ୍ଜ ଓଦା ନ କରି ପକ୍ଷୀଟି କେମିତି ଯାଇ ପାଣି ପିଇବ । ପକ୍ଷୀଟି ଗଡ଼ିଆ ଉପର ଦେଇ ଉଡ଼ିଗଲା, ହଠାତ୍ ତଳକୁ ଝାମ୍ପ ମାରିଲା, ଏବଂ ଯେମିତି ପାଣିର ଠିକ ଉପରକୁ ଆସି ପହଞ୍ଚିଛି ପାଟି ମେଲା କରି ଦେଲା ଓ ଚଳାଏ ଟାଣି ପିଇ ଦେଲା । ତା' ପରେ ସେ ନିଜକୁ ସିଧା କରିଦେଇ ଉପରକୁ ଉଡ଼ି ଗଲା । ଏମିତିକା ସେ ଦୁଇଥର କଲା ।



ସନ୍ଧ୍ୟା ବେଳର ସୁନା ରଙ୍ଗର ଆଲୁଅ ଓ ଝରି ଆଡ଼ର ବଣ ଜଙ୍ଗଲ ପଛାଟିର ଏ ଖେଳ ଲାଗି ସୁନ୍ଦର ପରିବେଶଟିଏ ସୃଷ୍ଟି କରିଥାଏ । ତା' ପରେ ଗାଡ଼ିଆ ପାଖକୁ ଯେଉଁମାନେ ଆସିଲେ ସେମାନେ ହେଲେ ଏକ ପ୍ରକାର ହରିଣ (ସ୍ପଟେଡ୍ ଡିଅର୍) । ଆମ ଦେଶରେ ସେମାନଙ୍କୁ ଚିତଲ୍ ବୋଲି କୁହାଯାଇଥାଏ । ସେମାନେ ଡରି ଡରି ଆସୁଥାନ୍ତି । ମୋହନ ଭାବିଥିଲା ଯେ ସମସ୍ତଙ୍କ ଆଗରେ ଗୋଟାଏ ବଡ଼ ହରିଣ ବାଟ କଢ଼ାଇ ଆସୁଥିବ । କିନ୍ତୁ ବୁଦା ଆଢୁଆଳରୁ ପ୍ରଥମେ ଆସିଲା, ଗୋଟିଏ ବୁଢ଼ୀ ହରିଣୀ । ଖୋଲା ଜାଗାକୁ ବାହାରି ଆସିଲା ବେଳେ ସେ ଭୟରେ ଥରୁଥାଏ । ଟିକିଏ ଶବ୍ଦ ହେଲେ ସେ ତା' ଆଗ ଗୋଡ଼ ବାଡ଼େଇ ବୁଲି ପଡ଼ି ଦୌଡ଼ିବ । ଧୀରେ ଧୀରେ ପାଦ ପକାଇ ସେ ପାଣି ଦାଢ଼ରେ ଆସି ପହଞ୍ଚିଲା ଏବଂ କିଛି ସମୟ ଧରି ପାଣି ଆଡ଼େ ଅନାଇଁ ଠିଆ ହୋଇ ରହିଲା । ତା' ପରେ ସେ ପାଣି ପିଇବାକୁ ତା' ମୁଣ୍ଡ ନୁଆଁଇଲା । କିନ୍ତୁ ସେତେବେଳେ ମଧ୍ୟ ସେ ଛନ୍ ଛନ୍ ହେଉଥାଏ । ହଠାତ୍ ଶେଷଥର ପାଇଁ ମୁଣ୍ଡ ଟେକି ଝରିଆଡ଼କୁ ଅନାଇଁ



ଦେଖି ନେଲା ଯେ ପାଖ ଆଖରେ କୌଣସି ଶତ୍ରୁ ନାହାନ୍ତି । ଶେଷରେ ସେ ମୁଣ୍ଡ ତଳକୁ କରି ଅନେକ ବେଳ ଯାଏଁ ପାଣି ପିଇଲା । ପଛରେ ଅପେକ୍ଷା କରିଥିବା ହରିଣ ପଲ ଏଥିରୁ ଜାଣି ପାରିଲେ ଯେ କିଛି ବିପଦ ନାହିଁ, ସେମାନେ ଏକା ସାଙ୍ଗରେ ଧସାଇ ଆସିଲେ ପାଣି ପିଇବାକୁ । ସବା ପଛରେ ବଡ ବଡ ହରିଣଗୁଡାଙ୍କୁ ଦେଖି ମୋହନ ଡରିଗଲା, ସେମାନେ ସୁବିଧା ଜାଗା ପାଇଁ ପଲ ଭିତରେ ଠେଲା ପେଲା କରି ମାଡି ଆସୁଥାନ୍ତି । ହରିଣ ପଲ ଗଡିଆ ପାଖରେ ଅନେକ ସମୟ ଧରି ରହିଲେ । କୁନି ହରିଣମାନେ ଖେଳା ଖେଳି କରୁଥିବା ବେଳେ ଯୋଡାଏ ବଡ ହରିଣ ଲଢେଇ କଲେ । ସେ ଦୁହେଁ ମୁଣ୍ଡ ତଳକୁ କରି ପରସ୍ପର ଆଡକୁ ମାଡି ଯାଉଥାନ୍ତି, ମୁଣ୍ଡକୁ ମୁଣ୍ଡ ପିଟି ହେଉଥାନ୍ତି ଏବଂ ସେମାନଙ୍କର ଶିଙ୍ଘ ବାଜି ଜୋର୍ ଶବ୍ଦ ହେଉଥାଏ । ତା' ପରେ ଆଉ ଲଢେଇ ନାହିଁ, ଖାଲି ଠେଲା ଠେଲି । ଏମିତି କେତେଥର ଠେଲା ପେଲା ହେବା ପରେ ଦୁର୍ବଳିଆ ହରିଣଟା ବୁଲିପଡି ଭଲ୍‌ଦି ଭଲ୍‌ଦି ପଳାଇଲା । ମୋହନ ଭାବିଥିଲା ଯେ ଜିତିଥିବା ହରିଣଟା ହାରି ଯାଇଥିବା ହରିଣ ପଛରେ ଯାଇ ତା' ଦେହରେ ଶିଙ୍ଘ ଭୁସି ଦେଇ ତାକୁ ଖତମ କରିଦେବ । କିନ୍ତୁ ସେ ତାହା କଲା ନାହିଁ । ହରିଣମାନେ ଯେଉଁ ଋତୁରେ ଛୁଆ ଜନ୍ମ କରନ୍ତି,ସେ ସମୟରେ ଦଳର ମୁରବି ପଣ ହାସଲ କରିବା ଲାଗି ଏ ପ୍ରକାର ଲଢେଇ ପ୍ରାୟ ହୋଇଥାଏ । ମୁରବି ହରିଣ ଅନ୍ୟ ହରିଣମାନଙ୍କୁ ପ୍ରାୟ ପଛରେ ନାହିଁ, ଅବଶ୍ୟ ଯେ ପର୍ଯ୍ୟନ୍ତ କେହି ତା'ର ମୁରବି ପଣିଆକୁ ବେଖାତିର୍ ନ କରନ୍ତି ବା ତା' କାମରେ ମୁଣ୍ଡ ନ ପୂରନ୍ତି । ତା' ଯଦି ହୁଏ ପୁଣି ଥରେ ଲଢେଇ ହେବ । କିନ୍ତୁ ଯେ ଥରେ ଦଳର ନେତା ହୁଏ, ସେ ପ୍ରାୟ ସବୁଦିନ ପାଇଁ ନେତା ରହେ । ଜଣେ ବୁଢୀ ହରିଣୀଟା ଏ ଦଳର ସମସ୍ତଙ୍କୁ ପାଣି ଆଡକୁ ବାଟ କଢାଇ ନେଲା ।

ଜଙ୍ଗଲରେ ନାନା ରକମର ଶବ୍ଦ ଶୁଭିଲା, କେତେକ ଶବ୍ଦ କାନକୁ ମିଠା ଅନ୍ୟଗୁଡାକ କଦର୍ଯ୍ୟ, କେତେକ କମ୍ ତ ଆଉ କେତେକ ଖୁବ୍ ଜୋର୍‌ରେ ଶୁଭୁଥାଏ । କେତେକ ଶବ୍ଦ ଅଳ୍ପ ସମୟ ପାଇଁ ତ ଆଉ କେତେକ ବହୁ ସମୟ ଧରି ଚାଲିଥାଏ । ଏ ଭିତରୁ କେତେଗୁଡିଏ ଶବ୍ଦକୁ ମୋହନ ଚିହ୍ନି ପାରିଲା, ଅନ୍ୟଗୁଡିକ କେଉଁଠୁ ଆସୁଛି, କିଏ କରୁଛି ଜାଣି ପାରିଲା ନାହିଁ । ରାତି ହେବାକୁ ଯେମିତି ଆରମ୍ଭ କଲା, କେତେକ ପକ୍ଷୀ ଖୁବ୍ ଜୋର୍‌ରେ ରାବିଲେ, ସବୁଠୁ ବେଶି ଜୋରରେ ରାବୁଥାନ୍ତି ଜଙ୍ଗଲି କୁକୁଡା, ଶୁଆ ଓ ଛୋଟ ବାର୍‌ବେଟ୍ ଚଢେଇଗୁଡାକ । ହଠାତ୍ ଗୋଟାଏ କାନ-ଫଟା ଚିତ୍‌କାର ଶୁଭିଲା, ଯେତେ ଯେମିତି କେହି କାହାକୁ ମାଡି ବସି ତଣ୍ଟି ଚିପି ଦେଉଛି । ମୋହନ ଭାବିଲା ତା' ବାପା ଦୌଡିଯାଇ ବିପଦରେ

ପଡ଼ିଥିବା ଜନ୍ତୁଟାକୁ ରକ୍ଷା କରିଦେବେ । ଠିକ୍ ସେତିକିବେଳେ ଦଳେ ମୟୂର ଉଡ଼ିଆସି ପାଖ ଗଛଡାଳରେ ବସି ପଡ଼ିଲେ । ସେମାନେ ରାତିକ ପାଇଁ ବିଶ୍ରାମ ନେବା ଆଗରୁ ଖୁବ୍ ଜୋର୍‌ରେ ପାଟି କରୁଥାନ୍ତି । ମୟୂର-ଗୁଡ଼ାକ ବି ନାନା ପ୍ରକାର ବିଚିତ୍ର ଶବ୍ଦ କରୁଥାନ୍ତି । ଯେଉଁ ଚିତ୍କାର ଶୁଭୁଥିଲା ସେଟା ସେମାନଙ୍କର ଶବ୍ଦ । ମୋହନ ସେମାନଙ୍କର ଏ ସବୁ ଶବ୍ଦ ଶୁଣି ହସି ପକାଇଥାନ୍ତା, କିନ୍ତୁ ସେ ଜଙ୍ଗଲର ନୀରବତା ଭଙ୍ଗ କରିବାକୁ ଚାହୁଁ ନ ଥିଲା ।

ଭଲ ଭାବରେ ରାତି ହୋଇଯିବା ଆଗରୁ ଯୋଡ଼ାଏ ମାଟିଆ ରଙ୍ଗର ନେଉଳ ଆସି ପହଞ୍ଚି ଗଲେ । ସାପୁଆ କେଳାମାନେ ଯେଉଁ ଧୂସର ରଙ୍ଗର



ନେଉଳ ପୋଷି ଥାନ୍ତି ସେମାନଙ୍କ ଅପେକ୍ଷା ଏ ଯୋଡାକ ବେଶ୍ ବଡ଼ । ସେ ଦୁହେଁ ପଥର ସନ୍ଧି ଓ ପତ୍ର ଭିତରେ ମୁଣ୍ଡ ଗୁଞ୍ଜି ଖାଦ୍ୟ ଖୋଜିଲେ । ଏମିତି କରୁ କରୁ ସେ ଦୁହେଁ ପଥର ତଳେ ଶୋଇଥିବା ଗୋଟାଏ ସାପକୁ ଖୁବ୍ ରଗାଇ ଦେଲେ । ନେଉଳ ଯୋଡାଙ୍କୁ ଦେଖି ସାପଟା ତା’ ଭୁଲ୍ ବୁଝି ପାରିଲା ଏବଂ ଖସି ପଳାଇବାକୁ ଚେଷ୍ଟା କଲା । କିନ୍ତୁ ସାପଧରା ନେଉଳ ଯୋଡାକ ତାକୁ ଖୁବ୍ ଶୀଘ୍ର ଚପିଗଲେ । ସେ ଦୁହେଁ ସାପଟାକୁ ଟୁଦୁଟୁଦୁକିଆ ଜଙ୍ଗଲ ଭିତରକୁ ଘୋଷାରି ଆଣିଲେ । ମୋହନ ଆଉ କିଛି ଦେଖି ପାରିଲା ନାହିଁ ।

## 3

ଜଙ୍ଗଲଟା ଅନ୍ଧାର ହୋଇ ଆସିଲା । ଦିନ ବେଳାର ପଶୁପକ୍ଷୀ ଓ ରାତି ବେଳାର ପଶୁପକ୍ଷୀ ଆସିବା ଭିତରେ ଯେଉଁ ଟିକକ ସମୟ ଥିଲା ସେତେବେଳେ ଜଙ୍ଗଲଟା ପୁରାପୂରି ଚୁପ୍‌ଚାପ୍ ହୋଇ ଯାଇଥିଲା । ଗୋଟିଏ ନାଇଟ୍ ଜାର୍ ଚଢେଇ ପ୍ରଥମେ ଆସି ତା’ର ଚକ୍, ଚକ୍, ଚକ୍, ଚକ୍ ର୍-ର୍ ଶବ୍ଦରେ ନୀରବତା ଭଙ୍ଗ କଲା । ତା’ ପରେ ଆସିଲା ଗୋଟାଏ ବଡ ଶିଙ୍ଘବାଲା ପେଚା । ସେ ଖୁବ୍ ଜୋର୍‌ରେ ଡର ଲାଗିବା ଭଳି ବୁ-ବୁ, ବୁ-ବୁ ଶବ୍ଦକୁ କିଛି କିଛି ସମୟ ଅନ୍ତରରେ ଦୋହରାଇଲା । ମୋହନର ମନେ ପଡିଗଲା ସେସବୁ ଗପ, ଯେଉଁଥିରେ ଜଙ୍ଗଲ ଭିତରେ ବାଟ ଭୁଲି ଯାଇଥିବା ବାଟୋଇମାନେ ଏ ବିଚିତ୍ର ଶବ୍ଦ ଶୁଣି ପାଗଳ ହୋଇ ଯାଇ-ଥିଲେ । ମୋହନ ଭୟରେ ଥରି ଗଲା ।

ଫିକା ଅନ୍ଧାରରେ ବସି ମୋହନ ଦେଖିଲା ଯେ ଖାଲି ଆଖି ଅପେକ୍ଷା ବାଇନୋକୁଲାର୍‌ରେ ଦେଖିଲେ ସେ ଟିକିଏ ଭଲ ଭାବରେ ଚାରିଆଡ ଦେଖି ପାରୁଛି । ତଥାପି ଆଖି ଅପେକ୍ଷା ସେ ତା’ର କାନ ଉପରେ ବେଶି ନିର୍ଭର କରୁଥାଏ । ସେ ଅନାଇଁ ବସିଥାଏ କେତେବେଳେ ଜହ୍ନ ଉଠିବ ଏବଂ ଗଡିଆ ଓ ଆଖପାଖ ଅଞ୍ଚଳ ଆଲୁଅ ହୋଇଯିବ ।

ଏତେ ସମୟ ଧରି ବସି ରହିବା ଫଳରେ ମୋହନକୁ ହାଲିଆ ଲାଗିଲା । ତଳର ବାଉଁଶ ବାଡା, ଆବୁଡା ଖାବୁଡା ଓ ଟାଣ ଲାଗୁଥାଏ । ସେ ଚାହୁଁଥାଏ ଅଲଗା ବାଗରେ ବସିବାକୁ । ତାକୁ କାମୁଡି ବିରକ୍ତ କରୁଥିବା ମଶା ଓ ପୋକଜୋକଙ୍କୁ ବାଡେଇବାକୁ ତାର ଇଚ୍ଛା ହେଉଥାଏ । ତା’

ଗୋଡ ଯୋଡାକ ଝିମି ଝିମି ହୋଇ ଯାଉଥାଏ, ସେ ଚାହୁଁଥାଏ ଗୋଡ ଲମ୍ବାଇ ବସିବ । ସେ ଗଳା ଝଙ୍କାର ମାରି ପାରନ୍ତା କି, ଛିଙ୍କି ପାରନ୍ତା କି ଏବଂ ସବୁଠୁ ବଡ କଥା, ସେ କଥାବାର୍ତ୍ତା କରି ତା' ବାପାଙ୍କୁ ଗୁଡାଏ ପ୍ରଶ୍ନ ପଚାରି ପାରନ୍ତା କି ? କିନ୍ତୁ ଏମିତି କିଛି କରିବାକୁ ସେ ସାହସ କଲା ନାହିଁ, କାରଣ ଜନ୍ତୁମାନେ ଦୁରୁଡି ଯିବେ। ତା' ବାପା ମୂର୍ତ୍ତିଟିଏ ଭଳି ଧୀର ସ୍ଥିର ହୋଇ ବସିଥାନ୍ତି । ମୋହନ ତାଙ୍କୁ ପ୍ରଶଂସା ନ କରି, ଈର୍ଷା ନ କରି ରହିପାରିଲା ନାହିଁ । ସେ ଆଗରୁ ଶୁଣିଥାଏ ଯେ ଏମିତି ଲୋକ ଅଛନ୍ତି ଯେଉଁମାନେ କି ଘଣ୍ଟା ଘଣ୍ଟା ଧରି ମଞ୍ଚା ଉପରେ ଟିକିଏ ହଲଚଲ ନ ହୋଇ ବସି ରହି ପାରିବେ। ଏପରି କି ସେମାନଙ୍କର ଦେଖିଲା ଭଳି କୌଣସି ଦୃଶ୍ୟ ନ ଦେଖାଗଲେ ମଧ୍ୟ । ମୋହନ ନିଜକୁ ଭାଗ୍ୟବାନ ମଣୁଥାଏ, କାରଣ ସେ ଜଙ୍ଗଲର ଏମିତି କେତେ ଗୁଡିଏ ଦୃଶ୍ୟ ଦେଖି ପାରୁଥାଏ, ଯାହା କି ଅନ୍ୟମାନଙ୍କ ଭାଗ୍ୟରେ ଜୁଟେ ନାହିଁ । ତଥାପି ତାକୁ ବ୍ୟସ୍ତ ଲାଗୁଥାଏ । ସେ ଭାବୁଥାଏ ତା ବାପାଙ୍କ ଭଳି ସହଜରେ ସେ ସ୍ଥିର ହୋଇ ବସିପାରନ୍ତା କି ?

ସେ ତା' ବାପାଙ୍କୁ ଭଲ ଭାବରେ ଅନାଇଁଲା ଏବଂ ଦେଖିଲା ଯେ ସେ ମୋଟେ ବ୍ୟସ୍ତ ଦିଶୁ ନାହାଁନ୍ତି । ମୋହନ ତା' ବାପାଙ୍କ ଭଳି ବ୍ୟସ୍ତ ନ ହୋଇ ବସି ରହିବାକୁ ଠିକ୍ କଲା । ତା' ହେଲେ ସେ ରାତିର ଦୃଶ୍ୟ ଗୁଡାକୁ ପୂରା ଉପଭୋଗ କରି ପାରିବ ।

ତିନି ଫାଳିକିଆ ଜହ୍ନ ଡେରିରେ ଉଠିଲା । କିନ୍ତୁ ଦୁଇ ପର୍ବତ ମଝିରେ ଯେତେବେଳେ ଉଠିଲା ସେ ଦୃଶ୍ୟ ଖୁବ୍ ସୁନ୍ଦର ଦିଶିଲା । ତାରା ଭରା ଆକାଶରେ ଜହ୍ନଟା ଆଗେଇ ଯାଉଥାଏ । ଗଡିଆ ପାଣିରେ ଜହ୍ନଟା ଗୋଟାଏ ଚକ୍ ଚକ୍ ରୁପାର ନୌକା ଭଳି ଆସ୍ତେ ଆସ୍ତେ ଭାସି ଚାଲିଥାଏ । ମାଛଟେ କି ବେଙ୍ଗଟେ ଡେଇଁ ପଡିଲେ ସେ ଛବିଟି ଖଣ୍ଡ ଖଣ୍ଡ ହୋଇଯାଉଥାଏ, ପାଣି ସ୍ଥିର ହୋଇଗଲେ ପୁଣି ସବୁତକ ଖଣ୍ଡ ଏକାଠି ହୋଇ ମିଶି ଯାଉଥାଏ ।

ଜହ୍ନ ଆଲୁଅରେ ଗଛ ଓ ପଥର ଗୁଡାକ ଜଙ୍ଗଲର ଚଟାଣକୁ ଚେକା ଚେକା ଛାଇ ଓ ଆଲୁଅରେ ସଜାଇ ଦେଇଥାନ୍ତି । ଛାଇ ଆଲୁଅର ଏ ଖେଳ ସାଙ୍ଗରେ ମୋହନ ତାଳ ଦେଇ ପାରିଲା ନାହିଁ । ତା' ମୁଣ୍ଡକୁ ନାନା କଥା ଆସି ଜୁଟିଲା । ସେ ଭାବିଲା ଯେ ଅନ୍ଧାର ଭିତରେ ବାଘଟେ, ଚିତାଟେ କି ଭାଲୁଟେ ଲୁଚି ଲୁଚି ବୁଲୁଛି । କିନ୍ତୁ ଗଡିଆ ଚାରିପଟର ପ୍ରତ୍ୟେକ ଛାଇକୁ ଗଣି ପାରିବା ବେଳକୁ ସେ ଦେଖିଲା ଯେ ଜହ୍ନ ଟିକିଏ ଉପରକୁ ଉଠି ଆସି-

ଥିବାରୁ ସେ ଛାଇ ଆଲୁଅର ଜାଗା ବଦଳି ଯାଇଛି । ମୋହନକୁ ସେଗୁଡ଼ିକୁ ପୁଣି ଥରେ ଗଣିବାକୁ ପଡ଼ିବ । ଜହ୍ନ ଉପର ଦେଇ ଭାସି ଯାଉଥିବା ମେଘ ଖଣ୍ଡ ଗୁଡ଼ାକୁ ଅନାଇଁଲା ବେଳେ ମୋହନର ଆଖିକୁ କଷ୍ଟ ହେଲା ଏବଂ ସେଥିରୁ ପାଣି ବୋହି ଆସିଲା । ଏକଥା ଜାଣି ପାରି ତା' ବାପା ତାକୁ ଠାରରେ କହିଲେ ଯେ ସେ ଆଖିକୁ ଏତେ କଷ୍ଟ ନ ଦେଇ ଶଢ଼ ଗୁଡ଼ାକ ମଧ୍ୟ ଶୁଣୁ ।

ବେଶି ସମୟ ଯାଇ ନାହିଁ, ଦଳେ ବଣୁଆ ବାର୍‌ହା ଗୋଟିଏ ମାଈ ବାର୍‌ହାର ନେତୃତ୍ୱରେ ଆସି ଗଡ଼ିଆର ସେପଟକୁ ସିଧା ମୁହାଁଇଲେ । ଜଲ୍‌ଦି ଜଲ୍‌ଦି ପାଣି ପିଇସାରି ଦଳକଯାକ ପାଣି ଭିତରେ ପଶି କାଦୁଅରେ ଲଟପଟ ହେଲେ । ଦେହ ଥଣ୍ଡା କରି ସାରିବା ପରେ ସେମାନେ ଗଡ଼ିଆରୁ ବାହାରି ଆସିଲେ ଏବଂ ପୋକଜୋକ, ତଳେ ପଡ଼ିଥିବା ଫଳ ଓ ଚେରମୂଳ



ଖୋଳି ତାଡ଼ି ଖାଇଲେ ଏବଂ ଆସ୍ତେ ଆସ୍ତେ ବାହୁଡ଼ି ଗଲେ । ସେମାନେ ଯାହା ପଡ଼ିଲା ତା' ଖାଆନ୍ତି, ତେଣୁ ଖାଇବା ବିଷୟରେ ସେମାନେ କିଛି ବାରନ୍ତି ନାହିଁ । କିନ୍ତୁ ଗୃହପାଳିତ ଘୁଷୁରିମାନଙ୍କ ଭଳି ସେମାନେ ଅସନା ଜିନିଷ କେବେ ଖାଆନ୍ତି ନାହିଁ ।

ଅଳ୍ପ କେତେ ମିନିଟ୍ ଯାଇଛି, ଗୋଟାଏ ଭୟଙ୍କର ଦିଶୁଥିବା ବାର୍‌ହା ଆସିଲା । ତା'ର ଦୁଇଟା ସାନ ସାନ କିନ୍ତୁ ମୁନିଆଁ ଦାନ୍ତ ବାହାରିଥାଏ । ଆଗ ଦଳର ମାଈ ବାର୍‌ହାର ସେ ଦୁଇଗୁଣ ହେବ, ଆକାରରେ । ସେ ବିପରୀତ ଦିଗରୁ ଆସି ପାଣି ପିଇଲା । ସେ ପାଣି ପିଉଥିବା ବେଳେ ଗୋଟିଏ ଶୁଖିଲା ଡାଳ ଖସି ପଡ଼ିଲା ଏବଂ ସାମାନ୍ୟ ଶବ୍ଦ ହେଲା । ବାର୍‌ହା ତାକୁ କିଏ ଆକ୍ରମଣ କରୁଛି ବୋଲି ଭାବି ସେକ୍ଷଣି ବୁଲି ପଡ଼ିଲା । ମୁଣ୍ଡ ଉପରକୁ ଉଠାଇ ଦେଲା । ଜହ୍ନ ଆଲୁଅ ପଡ଼ି ତା' ଦାନ୍ତ ଚକ୍‌ଚକ୍ ଦିଶୁଥାଏ ।



ଟାଆଁସା ଟାଆଁସା ଚୂନ ଠିଆ କରିଦେଇ, ରାଗରେ ଗରଗର ହୋଇ, ଶବ୍ଦଟା ଯେଉଁପଟୁ ଆସିଥିଲା ସେ ଆଡ଼କୁ ଅନାଇଁଲା । ତା'କୁ ଦେଖି ମୋହନ ଭାବିଲା, ସେ ନିଜେ ଯଦି ଗୋଟାଏ ଝେକିଲା ବାଘ ହୋଇଥାନ୍ତା ତେବେ ବି ସେ ଏ ଭୟଙ୍କର ଜନ୍ତୁଟାଠୁ ଦୂରେଇ ରହନ୍ତା । ବାରହା ମାରେ ନ ମାରେ ଠାଣିରେ ଠିଆ ହୋଇଥାଏ ।

ଅଭୟାରଣ୍ୟ ପରିଚାଳକ ସେମାନେ ଖାଇବା ପାଇଁ କିଛି ଖାଦ୍ୟ ପ୍ଲାଷ୍ଟିକ୍ ଜରିରେ ଗୁଡ଼ାଇ ଆଣିଥିଲେ । କାଗଜରେ ଆଣି ଖୋଲିଥିଲେ ଫଡ଼୍ ଫାଡ଼୍ ଶବ୍ଦ ହୋଇଥାନ୍ତା, ଜଙ୍ଗଲଟା ଏତେ ଚୁପ୍ ଚାପ୍ ଯେ କାଗଜର ଶବ୍ଦ ଟିକକ ମଧ୍ୟ ଅନେକ ଦୂରରେ ଶୁଭିଯିବ ଏବଂ କାନ ଡେରି ରହିଥିବା ଜନ୍ତୁମାନେ ହୁରୁଡ଼ିଯିବେ । ଖାଦ୍ୟ ଖାଇସାରି, ଫ୍ଲାସ୍କରେ ଆଣିଥିବା କଫି ପିଇସାରିବା ପରେ ମୋହନର ବାପା ପ୍ରସ୍ତାବ କଲେ ଯେ ବର୍ତ୍ତମାନ ଦୁହେଁ ପାଳି କରି ଅନିଦ୍ରା ରହିବେ । ଦୁହିଙ୍କ ଭିତରେ ସର୍ତ୍ତ ରହିଲା, ଯଦି କିଛି ମଜା ଘଟଣା ଘଟେ ତେବେ ଚେଇଁ ରହିଥିବା ଜଣକ ଅନ୍ୟ ଜଣକୁ ଉଠାଇ ଦେବ ।

## 4

ମୋହନ ହିଁ ପ୍ରଥମେ ଚେଇଁ ରହିଲା । ଯୋଡ଼ିଏ ନାଲି ରଙ୍ଗର ଲ୍ୟାପ୍‌ୱିଙ୍ଗ୍ ଚଢ଼େଇ ଉଡ଼ି ଆସିଲେ । କିନ୍ତୁ ଓହ୍ଲାଇବା ଆଗରୁ ସେ ଦୁହେଁ ଗଛ ଉପର ଆକାଶରେ ଉଡ଼ି ଉଡ଼ି ଗଡ଼ିଆ ଚାରି ପାଖରେ ଚକ୍କର କାଟିଲେ । ସେମାନେ ଉଡ଼ି ଆସୁଛନ୍ତି, ଏତିକିବେଳେ ଗୋଟିଏ ଚଢ଼େଇ ମଞ୍ଚା ଓ ତା' ଉପରେ ଥିବା ମଣିଷଙ୍କୁ ଦେଖି ପକାଇଲା । ସେକ୍ଷଣି ସେ ଆର ଜଣକୁ ସାବଧାନ କରାଇଦେଲା । ଯୋଡ଼ିକଯାକ ଆମ୍ଭଙ୍କ ଚାରିପଟେ ଉଡ଼ି ଲାଗିଥାନ୍ତି, ଖୁବ୍ ଜୋର୍‌ରେ ଡିଡ୍-ହୋ ଡୁ-ଇଟ୍, ଡିଡ୍-ହୋ-ଡୁ-ଇଟ୍ ଶବ୍ଦ କରୁଥାନ୍ତି । ସେମିତି ଡାକ ଛାଡ଼ି ସେ ଦୁହେଁ ମୋହନ ଓ ଅଭୟାରଣ୍ୟ ପରିଚାଳକ ସେଠି ଅଛନ୍ତି ବୋଲି ଜଙ୍ଗଲର ସବୁ ପଶୁ ପକ୍ଷୀଙ୍କୁ ସାବଧାନ କରାଇ ଦେଉଥାନ୍ତି । ମୋହନକୁ ବିରକ୍ତ ଲାଗିଲା । ଚଢ଼େଇ ଯୋଡ଼ିକ ପଳାଇ ଯାଆନ୍ତେ କି ? ଭାଗ୍ୟ ଭଲ, ଚଢ଼େଇ ଯୋଡ଼ିକ ଏତେ ଥର ଡାକ ଛାଡ଼ିଲେ ବି ସେ ଜଙ୍ଗଲର ଜନ୍ତୁଜନ୍ତା ସେଥିପ୍ରତି ମୋଟେ କାନ ଦେଲେ ନାହିଁ ।

ହାତୀ ପଲ ଆସୁଥିଲେ ପ୍ରାୟ ସହଜରେ ଜଣା ପଡ଼ିଯାଏ । ପଲେ ଆସୁଥାନ୍ତି, ମୋହନ ସେମାନଙ୍କୁ ଦେଖିବା ଆଗରୁ ଜାଣିପାରି ସତର୍କ

ହୋଇଗଲା । ମା' ହାତୀମାନେ ଛୁଆଙ୍କୁ ଦୁଷ୍ଟାମି ନ କରିବା ପାଇଁ ଯେତେ ଅବା ଚେତାଇ ଦେଉଥାନ୍ତି । କିନ୍ତୁ ଛୁଆହାତୀଗୁଡ଼ିକ ସେମାନଙ୍କ ମା'ମାନଙ୍କ ଆଖି ଆଗରୁ ଖସି ପଳାଇ ପାଟିତୁଣ୍ଡ କରୁଥାନ୍ତି ଏବଂ ପରସ୍ପର ସାଙ୍ଗରେ ଦୁଷ୍ଟାମି କରି ଖେଳୁଥାନ୍ତି ।

ଯେତେବେଳେ ଗଡ଼ିଆ ପାଖରେ ପହଞ୍ଚିଲେ, ସେମାନେ ପାଣି ଆଡ଼କୁ ମାଡ଼ିଗଲେ ଏବଂ ମନ ବୋଧ କରି ପାଣି ପିଇଗଲେ । ଥରକୁ ଥର ସେମାନେ ନିଜ ଉପରକୁ ପାଣି ପିଚିକା ମାରୁଥାନ୍ତି । ଖୁବ୍ ଶୀଘ୍ର ସେମାନେ ଓଦା ହୋଇଗଲେ, ସେମାନଙ୍କ ଦେହ ଜହ୍ନ ଆଲୁଅରେ ଚିକ୍ ଚିକ୍ ଦିଶିଲା । ତା' ଫଳରେ ସେମାନେ ନିଜ ନିଜ ଆକାର ଅପେକ୍ଷା ବଡ଼ ଦେଖାଗଲେ । ସେମାନେ ମାଟିରେ ଗୋଇଠା ମାରି ଧୂଳି ଉଠାଇ ଧୂଳିରେ ଗାଧୋଇଲେ । ମୋହନ ଭାବିଲା, ଗାଧୋଇ ଆଉ ଲାଭ କ'ଣ, ଯଦି ସେମାନେ ଏତେ ଶୀଘ୍ର ନିଜ ନିଜ ଦେହକୁ ଅସନା କରି ପକାଉଛନ୍ତି । ତା' ପରଦିନ ସକାଳେ ଯାଇ ତା' ବାପା ହାତୀମାନେ ଏମିତି ହେବାର ରହସ୍ୟ ତାକୁ ବୁଝାଇ ଦେଲେ । ସେ କହିଲେ ଯେ ହାତୀମାନେ ଏମିତି ଧୂଳି ଓ କାଦୁଅ କାହିଁକି ବୋଳି-ହୁଅନ୍ତି ନା। ଏକେ ତ ସେମାନଙ୍କ ଦେହ ଥଣ୍ଡା ରହିବ, ଦ୍ୱିତୀୟରେ ସେମାନଙ୍କ ଦେହରେ ଲାଗିଥିବା ପୋକଜୋକ ମଧ୍ୟ ଏମିତି କରିବା ଦ୍ୱାରା ବାହାରିଯିବେ ।

ଶେଷରେ ଯେଉଁ ଜନ୍ତୁଟା ଆସିଲା ସେ ଥିଲା ଗୋଟାଏ ପୁରୁଷ ହାତୀ, ବିରାଟ ଦନ୍ତା ହାତୀଟାଏ । ତାର ଦୁଇଟାଯାକ ଦାନ୍ତ ସମାନ ଲମ୍ବା । ହାତୀଟା ଖୁବ୍ ବଡ଼ ଓ ରାଜକୀୟ ଦିଶୁଥିଲା । ମୋହନ ତା' ରୂପ ଓ ଆକାର ଦେଖି ମୁଗ୍ଧ ହୋଇଗଲା । ପଲ ଭିତରେ କେତେଟା ଟୋକା ଟାକଳିଆ ହାତୀ ଥିଲେ । ସେମାନେ ସମସ୍ତେ ଏକାଠି ହୋଇଯାଇ ନାନା କାଣ୍ଡ କାରଖାନା କଲେ । ହାତୀମାନେ ବାହୁଡ଼ିଯିବା ପରେ ମନେ ହେଲା ଯେତେ ଯେମିତି ଝଡ଼ଟାଏ ବହିଗଲା ଏବଂ ପୁଣି ଚାରିଆଡ଼ େ ଶାନ୍ତ ହୋଇଗଲା ।

ସମସ୍ତ ରାତି ଚାଲିଲା । ଅଧ ରାତି ହେଲାବେଳକୁ ଜନ୍ତୁମାନଙ୍କର ଆସିବା କମିଗଲା । ମୋହନର ଶୋଇବାର ପାଳି ପଡ଼ିଲା ଏବଂ ସେଥିପାଇଁ ସେ ମୋଟେ ଦୁଃଖ କଲାନାହିଁ । ବଡ଼ି ସକାଳୁ ସକାଳୁ ଉଠି ପଡ଼ି ସେ ପୁଣି ଜନ୍ତୁ ଆସିବା ପାଇଁ ଅପେକ୍ଷା କଲା । କିନ୍ତୁ ତାକୁ ଭଲ ଲାଗିବା ଭଳି କୌଣସି ଘଟଣା ନ ଘଟିବାରୁ ସେ ପୁଣି ନିଦରେ ଶୋଇ ପଡ଼ିଲା ।

ଜଙ୍ଗଲର ଚାରିଆଡ଼େ କେମିତି ଜୋର ଶବ୍ଦ ହେଲା, ତା' ନିଦ ଭାଙ୍ଗି-

ଗଲା । ହରିଣ (ସ୍ପଟେଡ୍ ଡିୟର୍) ମାନଙ୍କର ଚିର୍‌ଚିର୍ ପାଟି, ସମ୍ବର-ମାନଙ୍କର ତ୍ରି ଶବ୍ଦ ଭଳି କୁହାଟ ଓ ଲଙ୍ଗୁରମାନଙ୍କର କାଶିବା ଶବ୍ଦରୁ ଜଣା ପଡ଼ିଲା ଯେ ସେମାନେ ସମସ୍ତେ ଡରି ଯାଇଥାନ୍ତି । ଖୁବ୍ ଶୀଘ୍ର ମୟୁର-ମାନେ ମଧ୍ୟ ସେ ହୋ ହାଲ୍ଲାରେ ଯୋଗ ଦେଲେ । ଧୀରେ ଧୀରେ ପବନ ବୋହୁଥାଏ । ମୋହନ ସେକ୍ଷଣି ଉଠି ବସିଲା, ସେ ମଧ୍ୟ ଖୁବ୍ ଉତ୍ତେଜନା ଅନୁଭବ କଲା । ସେ ନିଶ୍ଚିତ ହୋଇଗଲା, ଏ ସବୁ ଜନ୍ତୁଜନ୍ତା ଗୋଟାଏ ଭୟଙ୍କର ଜନ୍ତୁର ବାସ୍ନା ପାଇଛନ୍ତି କିମ୍ବା ସେଟାକୁ ଦେଖି ପାରିଛନ୍ତି । ହୁଏ ତ ଗୋଟାଏ ବାଘ ବାହାରିଛି । ସେତେବେଳକୁ ତା' ବାପା ମଧ୍ୟ ଉଠି ସାରି ଥାନ୍ତି । ପବନ ବୋହିବା ବନ୍ଦ ହୋଇଗଲା ସାଙ୍ଗେ ସାଙ୍ଗେ ଡର ଭୟରେ ଜାନିଆ ହୋଇଥିବା ଜନ୍ତୁମାନଙ୍କ ଡାକ ଆଉ ଶୁଭିଲା ନାହିଁ । ସେମାନେ ସେ ଜନ୍ତୁଟାକୁ ଦେଖି ନ ଥାନ୍ତି ।

କିନ୍ତୁ ଏ ଗୋଳମାଳ ବେଶି ସମୟ ଧରି ଚାଲିଲା ନାହିଁ । ହରିଣମାନେ ନିଜ ନିଜକୁ ଓ ଜଙ୍ଗଲର ଅନ୍ୟ ଜନ୍ତୁଜନ୍ତାଙ୍କୁ ବିପଦ ବିଷୟରେ ସାବଧାନ କରାଇ ଦେବାକୁ ଚେଷ୍ଟା କଲେ । କିନ୍ତୁ ଜନ୍ତୁଟା ଜଣକୁ ମାରି ସାରିବା ପରେ ବିପଦ କଟିଯାଇ ଥିଲା । ବର୍ତ୍ତମାନ କିଛି ସମୟ ଧରି ଚାରିଆଡ ଶାନ୍ତ ହୋଇଯିବ । ତେଣୁ ହରିଣମାନେ ପୁଣି ଯାଇ ଯେ ଯାହା କାମରେ ଲାଗିଗଲେ ।

ମାରଣା ଜନ୍ତୁଟା କିଏ ଜାଣିବାକୁ ମୋହନ ଓ ତା' ବାପାଙ୍କୁ ବେଶି ଡେରି ଲାଗିଲା ନାହିଁ । ବାଘଟାଏ ଗର୍ଜନ କଲା । ଆ-ଉ-ଓ-ଆଃ, ଆ-ଉ-ଓ-ଆଃ ଗର୍ଜନ ଥରକୁ ଥର ଶୁଭିଲା । ମୋହନ ଆଗରୁ ଶୁଣିଥିବା ସବୁ ଶବ୍ଦ ଅପେକ୍ଷା ସେ ଶବ୍ଦଟା ବେଶି ଭୟଙ୍କର ଶୁଭିଲା । ବାଘର ଗର୍ଜନ ଗୋଟାଏ କୁଆରିଆ ଲହଡ଼ି ଭଳି ଅନ୍ୟ ସବୁ ପ୍ରକାର ଶବ୍ଦକୁ ବୁଡ଼ାଇ ଦେଇ ଜଙ୍ଗଲ ସାରା ମାଡ଼ିଗଲା ଏବଂ ଭୟରେ ମୋହନ ଜଡ଼ସଡ଼ ହୋଇଗଲା । ସେ ଗର୍ଜନର ଉତ୍ତରରେ ଆଉ ଏକ ଗର୍ଜନ ଶୁଣାଗଲା କିଛି ଦୂରରୁ । ଦୁଇଟା ବାଘ ଏମିତି ସ୍ୱରରେ କଥାବାର୍ତ୍ତା କରୁଥିବା ବେଳେ ସାରା ଜଙ୍ଗଲଟା ଚୁପ୍‌ଚାପ୍ ହୋଇ ଶୁଣୁଥାଏ । ଦ୍ୱିତୀୟ ବାଘଟା ଆସ୍ତେ ଆସ୍ତେ ପାଖେଇ ଆସିଲା ଏବଂ ଖୁବ୍ ଶୀଘ୍ର ପ୍ରଥମ ବାଘ ପାଖରେ ଆସି ପହଞ୍ଚି ଗଲା । ମିଳିଥିବା ଖାଦ୍ୟକୁ ଏକାଠି ଖାଇବା ପାଇଁ ପ୍ରଥମ ବାଘ ତାକୁ ଡାକୁଥିଲା । ତା'ପରେ ବେଳେ ବେଳେ ଟିକିଏ ଘାଉଁ ଘାଉଁ ଶବ୍ଦ ଶୁଭିଲା, ନ ହେଲେ ଦୁଇଟାଯାକ ବାଘ ଚୁପ୍‌ଚାପ ଖାଇବାରେ ଲାଗିଗଲେ ।

ସିଂହମାନେ ପ୍ରାୟ ଦଳ ଦଳ ହୋଇ ବୁଲନ୍ତି । କିନ୍ତୁ ବାଘମାନେ

ପ୍ରାୟ ଏକୁଟିଆ ବୁଲୁଥାନ୍ତି । କେବଳ ବାଘ ବାଘୁଣୀ ମିଳାମିଶା ହେବା ଋତୁ ଆସିଗଲେ ସେମାନେ ଯୋଡ଼ା ଯୋଡ଼ା ହୋଇ ବୁଲୁଥିବାର ଦେଖାଯାନ୍ତି । ଅଭୟାରଣ୍ୟ ପରିଚାଳକ ବର୍ତ୍ତମାନ ନିଶ୍ଚିତ ହୋଇଗଲେ ଯେ ଜଙ୍ଗଲର ସେହି ଅଞ୍ଚଳରେ ଯୋଡ଼ାଏ ବାଘ ବୁଲୁଛନ୍ତି । ସେ ସେ ଦୁହିଁଙ୍କର ପାଦଚିହ୍ନ ଅନେକ ଥର ଦେଖିଥାନ୍ତି, କିନ୍ତୁ ଦୁହିଁଙ୍କୁ କେବେ ଦେଖି ନ ଥାନ୍ତି । ବାଘମାନଙ୍କର ଦେଖାଶୁଣା କରିବା ତାଙ୍କର ପ୍ରଧାନ ଦାୟିତ୍ୱ ଏବଂ ସେଥିପାଇଁ ସେ ଦୁହିଁଙ୍କୁ ଦେଖିବାକୁ ସେ ଖୁବ୍ ଚାହୁଁଥାନ୍ତି ।

ଚିଡ଼ିଆଖାନା ଛଡ଼ା ମୋହନ ଆଉ କେଉଁଠି କେବେ ବାଘ ଦେଖି ନ ଥାଏ । ଗୋଟେ ବାଘକୁ ଦେଖିବାକୁ ତାର ବହୁତ ଆଶା ଥିଲା । ସେ ଭାବିଲା, ଆଃ ବାଘ ଯୋଡ଼ାକ ଦେଖା ଦିଅନ୍ତେ କି ? ଆଲୁଅ ଯେମିତି ବଢ଼ିବାରେ ଲାଗିଲା ମୋହନ ସେ ଆଶା ହରାଇବାକୁ ବସିଲା । ତା' ପରେ, ସକାଳ ଯେମିତି ହୋଇଛି, ଜଙ୍ଗଲ ରାସ୍ତାରେ କ'ଣ ଗୋଟାଏ ଚାଲି ଆସୁଥିବା ସେ ଜାଣିପାରିଲା ।

ସେ ଚାହିଁ ରହିଥାଏ । ଗୋଟାଏ ବିରାଟ ବାଘ ତା' ଆଗରେ ପଡ଼ିଲା । ତା' ଦେହଯାକ ସୁନ୍ଦର ପଟା ପଟା ଦାଗ ହୋଇଥାଏ ଏବଂ ତା'ର ଚାଲିରୁ ଜଣା ପଡ଼ୁଥାଏ କେତେ ବେଶି ତା'ର ବଳ । ବାଘଟା ମଞ୍ଚା ପଟେ ଗାଡ଼ିଆ ଆଡ଼କୁ ମୁହାଁଇଲା, ଯେଉଁଠି କି ଖୁବ୍ ପରିଷ୍କାର ପାଣି ଥିଲା । ସେ ପଥର ଉପରେ ଆଣ୍ଠେଇ ପଡ଼ି ପାଣି ପିଇଲା । ପରେ ଆସି ଜୁଟିଲା ଗୋଟେ ଛୋଟ ବାଘ । ମନେ ହେଲା ଯେ ସେଟା ଗୋଟେ ବାଘୁଣୀ । ପରେ ତା'ର ପାଦ ଚିହ୍ନ ପରୀକ୍ଷା କରି ମୋହନର ବାପା ଜାଣିପାରିଲେ ଯେ ପ୍ରକୃତରେ ସେଟା ଗୋଟେ ବାଘୁଣୀ । ଉଇଁ ଆସୁଥିବା ସୂର୍ଯ୍ୟର କିରଣ ଦୁଇ ଜଣଙ୍କ ଉପରେ ପଡ଼ିଲା । ସେମାନଙ୍କ ଦେହ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଦୃଶ୍ୟ ଭୁଲିବାର ନୁହେଁ । ମୋହନ ଏକା ଲୟରେ ଅନାଇଁ ଥାଏ । ତା' ବାପା ତାଙ୍କ ଦେହର ଦାଗ ଗୁଡ଼ାକୁ ବେଶି ମୁହଁର ଦାଗ ଗୁଡ଼ାକୁ, ଆଙ୍କି ନେଉଥାନ୍ତି । ପରେ ସେମାନଙ୍କୁ ଚିହ୍ନିବା ସହଜ ହେବ ବୋଲି ।

ମୋହନ ବାଇନୋକୁଲାର୍ ଉଠାଇ ଧରିଲା ଏବଂ ବାଘର ମୁଣ୍ଡଟାକୁ ନିରେଖି ଦେଖିଲା । ଏହା ଦେଖି ହଠାତ୍ ବାଘଟା ଏତେ ପାଖକୁ ଚାଲି ଆସିଲା ଯେ ମୋହନ ଆବାକାବା ହୋଇଗଲା । ବାଘଟା ବୁଲି ପଡ଼ିଲା, ମଞ୍ଚା ଆଡ଼କୁ ଓ ବାଇନୋକୁଲାର୍ କାଚକୁ ସିଧା ଅନାଇଲା । କୌତୂହଳ ଓ ସନ୍ଦେହରେ, ଭୟରେ ନୁହେଁ ଏବଂ ଏପରି ଭାବରେ ମୋହନ ତା' ବାଘକୁ ସାମ୍ନାସାମ୍ନି ଦେଖିଲା ।

